# ରବିବାର କଥା

( ପ୍ରଥମ ଖଣ୍ଡ )



ଶ୍ରୀ ମୁକୁନ୍ଦ ମିଶ୍ର

# ଭାବିବାର କଥା

( ପ୍ରଥମ ଖଣ୍ଡ )

ଲେଖକ
**ଶ୍ରୀ ମୁକୁନ୍ଦ ମିଶ୍ର,** ଏମ୍. ଏସ୍‌ସି.
ଓଡ଼ିଶା ଶିକ୍ଷା ବିଭାଗର ଡେପୁଟି ଡାଇରେକ୍ଟର ।

ପ୍ରଥମ ସଂସ୍କରଣ
୧୯୬୮

ପ୍ରକାଶିକା
**ଶ୍ରୀମତୀ ଲାବଣ୍ୟବତୀ ଦେବୀ**
ହେବଗୋବିନ୍ଦ ସାହି, ପୁରୀ

ମୂଲ୍ୟ — ଟ୧.୨୫

# ପଦେ ଅଧେ

କାହାର ଦିନ ସମାନ ଯାଏନା । ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର । ଦିନ ଥିଲା ଯେତେବେଳେ ରୋମ, ଗ୍ରୀସ୍, ବାବିଲନ୍, ସ୍ପେନ୍, ପର୍ତ୍ତୁଗାଲ୍, ଫ୍ରାନ୍ସ, ଜର୍ମାନୀ ଓ ଇଂଲଣ୍ଡ ଆଦି ପ୍ରତ୍ୟେକ ଦେଶର ପ୍ରତାପ ସମସ୍ତ ମେଦିନୀକୁ ଥରହର କରିଥିଲା । ପୁଣି ଦିନ ଆସିଛି ଯେତେବେଳେ "କି ଥିଲା ଏ ରାଜ୍ୟ କି ହୋଇଛି ଆଜି" ନ୍ୟାୟରେ ସେମାନଙ୍କର ଦୟନୀୟ ଅବସ୍ଥା ପ୍ରତ୍ୟେକଙ୍କ ମନରେ ବିସ୍ମୟ ମଧ୍ୟ ସୃଷ୍ଟି କରୁଛି ।

ଆଜି ସହରକୁ କେନ୍ଦ୍ର କରି ଗଢ଼ି ଉଠିଥିବା ପାଶ୍ଚାତ୍ୟ ସଭ୍ୟତା ଓ ଗ୍ରାମକୁ କେନ୍ଦ୍ର କରି ଗଢିଉଠିଥିବା ପ୍ରାଚ୍ୟ ଆର୍ଯ୍ୟ ସଭ୍ୟତା ପରସ୍ପର ଘୋର ସଂଘର୍ଷର ସମ୍ମୁଖୀନ । ସତେ ଯେପରି ଜଣାପଡ଼ୁଛି, କିଏ ଗୋଟେ ହାରିବ ବା ଜିତିବ । ପାଶ୍ଚାତ୍ୟ ସଂସ୍କୃତି ମାତ୍ର ଏଇ ଟିକେତେ ବର୍ଷର, ମାତ୍ର ପ୍ରାଚ୍ୟ ଆର୍ଯ୍ୟ ସଂସ୍କୃତି ବହୁ ପୁରାତନ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତା ମଧ୍ୟରୁ କିଏ କାହା ଆଗରେ ଅଛି, କହିବା କଠିନ । ଯେହେତୁ ଉଭୟଙ୍କର ମୁହଁ ବିପରୀତ ଦିଗରେ । ପ୍ରାଚ୍ୟ ସଭ୍ୟତାରେ ବ୍ୟକ୍ତି ଶ୍ରେୟ ଆଡ଼କୁ ମୁହାଁଇବା ବେଳକୁ ପାଶ୍ଚାତ୍ୟ ସଭ୍ୟତାରେ ବ୍ୟକ୍ତି ପ୍ରେୟ ଆଡ଼କୁ ମୁହାଁଇଛି । ଶ୍ରେୟ, ମାନେ ଯାହା ମଙ୍ଗଳଜନକ ; ଏ ମାର୍ଗରେ ବ୍ୟକ୍ତିର ଜାଗତିକ କଲ୍ୟାଣ ହିଁ ଏକମାତ୍ର ଧ୍ୟେୟ ହୁଏ । ଏ ମାର୍ଗରେ ବ୍ୟକ୍ତି ତ୍ୟାଗ-ଅଭିମୁଖୀ ଓ ସେବାପରାୟଣ ହୁଏ । ଏ ମାର୍ଗରେ ଅଭାବର ସଙ୍କୋଚନ ହୁଏ । ତେଣୁ ଅନ୍ୟର ସେବା ପାଇଁ ସମ୍ବଳ ଓ ସମୟ ଯଥେଷ୍ଟ ମିଳେ ଏବଂ ବ୍ୟକ୍ତି ଅଳ୍ପକେ ସନ୍ତୋଷ ଓ ଆନନ୍ଦ ପାଏ । ମାତ୍ର ପ୍ରେୟ, ମାନେ ଯାହା ନିଜକୁ ପ୍ରୀତିକର ; ଏ ମାର୍ଗରେ ବ୍ୟକ୍ତିର କେବଳ ସ୍ୱାର୍ଥସାଧନ ହିଁ ଧ୍ୟେୟ ହୁଏ । ଏପରି କି ଅନ୍ୟର ସ୍ୱାର୍ଥ ପ୍ରତି ପରାଙ୍ମୁଖ ହେବାକୁ, ବେଳେ ବେଳେ ଅନ୍ୟର ସ୍ୱାର୍ଥରେ ଧୂଳି ପକାଇବାକୁ ବି ବ୍ୟକ୍ତି ପଛାଏ ନାହିଁ । ଏ ମାର୍ଗରେ ଅଭାବବୋଧ

ଅସମ୍ଭବ ଭାବରେ ବଢ଼ିଚାଲେ, ଏପରି କି କୋଟିପତି ମଧ୍ୟ "ଆଉରି ମିଳୁ, ଆଉରି ମିଳୁ" ଏହି କାମନାରେ ଅନ୍ୟମାନଙ୍କ ସହିତ ପ୍ରତି-ଯୋଗିତା କରି ଅନବରତ ଦଉଡ଼ୁଥାଏ ; ଫଳରେ ଅନ୍ୟର ସେବା ତ ଦୂର କଥା, ନିଜର ଅଭାବବୋଧ ନିରାକରଣ ନିମନ୍ତେ ଲାଗିରହେ ଏବଂ ବ୍ୟକ୍ତି ଜୀବନ ତମାମ ଦୁଃଖ ହିଁ ଭୋଗେ ।

ମଣିଷ କୋଡ଼ିଏ କୋଟି ବର୍ଷ ହେବ ପୃଥିବୀକୁ ଆସିଲାଣି ବୋଲି କୁହାଯାଉଛି । ସେ କ'ଣ ଏତେ ଦିନ ଶୋଇ ରହିଥିଲା ? ହେଲେ, ଏବେ ପାଖାପାଖି କି ଶହେ ବର୍ଷ ହେବ ତା'ର ନିଦ ଭାଙ୍ଗିଛି ଏବଂ ସେ ସଭ୍ୟ ହେବାକୁ ଶିଖିଛି—ଏହା କ'ଣ କେବେ ବିଶ୍ୱାସ-ଯୋଗ୍ୟ ହୋଇପାରେ ? 'ଯିବା ଆସିବା' ଏ ଦୁନିଆଁରେ ଚାଲିଛି । ଆଜିର ଯେ ନିର୍ମମ ଯାନ୍ତ୍ରିକ ଆସୁରୀ ସଭ୍ୟତା ଦୁନିଆଁକୁ ଗ୍ରାସ କରିବାକୁ ବସିଛି, ତାହା ଯେ ବହୁବାର ଆସିଛି ଏବଂ ପୁଣି ଅବଶ୍ୟ-ମ୍ଭାବୀ ଚରମ ସନ୍ଦେହ, ସଂଘର୍ଷ, ଅଶାନ୍ତି ଓ ବ୍ୟଭିଚାରର ବୃଦ୍ଧି ଫଳରେ ତାହା ଯେ ବହୁବାର ଲୋପ ପାଇଛି, ଏହା କ'ଣ କେବେ ମିଥ୍ୟା ହୋଇପାରେ ? ବର୍ତ୍ତମାନର ଯାନ୍ତ୍ରିକ ସଭ୍ୟତାର ମନ୍ଦ ପ୍ରଭାବ ଫଳରେ ଯେ ଅସନ୍ତୋଷ ଓ ସନ୍ଦେହର ବହ୍ନି ସର୍ବତ୍ର ଜଳୁଛି, ଏବଂ ତାହା ଯେ ପରିଣାମରେ ବର୍ତ୍ତମାନର ଏ ସଭ୍ୟତାର ଧ୍ୱଂସ ସାଧନ କରିବ, ଏହା କ'ଣ ଅନୁମାନ କରି ହେଉନାହିଁ ? ପୁରାଣ ଯୁଗରେ ଏହି ଆର୍ଯ୍ୟ ଭୂମିରେ ଏପରି ଯାନ୍ତ୍ରିକ ସଭ୍ୟତା ତଥା ଆସୁରୀ ସଭ୍ୟତା ବହୁବାର ଅତି ଉଚ୍ଚ ସ୍ଥାନରେ ପହଞ୍ଚି ଯେ ଧ୍ୱଂସ ପାଇଛି ତାହାର ବର୍ଣ୍ଣନା ଶୁଣିବାକୁ ମିଳେ । ମହିଷାସୁର, ସମ୍ବରାସୁର, ଭସ୍ମାସୁର, ହିରଣ୍ୟକଶିପୁ, କଂସାସୁର ଓ ରାବଣାସୁର ଆଦି ପ୍ରତ୍ୟେକ ଯନ୍ତ୍ର ବଳରେ ବଳୀୟାନ୍ ହୋଇ ମେଦିନୀକୁ ଥରହର କରିଥିଲେ । ବିନା ଯନ୍ତ୍ରରେ ଅସୁରର ବଳ ପାଇବା ଅସମ୍ଭବ । ମାତ୍ର ଯନ୍ତ୍ର ସହିତ ଆସୁରୀ ଭାବ, ଯଥା: କର୍କଶ ଭାବ, ନିର୍ମମତା, ଅସହିଷ୍ଣୁତା, ଅଶାନ୍ତି,

ବ୍ୟଭିଚାର, ଗର୍ବ, ଅହଙ୍କାର, ଅନାଚାର ଓ ଅତ୍ୟାଚାରର ବୃଦ୍ଧି ହୁଏ ; ଫଳରେ, କାଳକ୍ରମେ ଏ ପ୍ରକାର ସଭ୍ୟତା ଲୋକ-ସମର୍ଥନ ହରାଏ । ଠିକ ଯେପରି ଅନ୍ୟାୟର ଆତିଶଯ୍ୟ ଫଳରେ ନ୍ୟାୟର ସ୍ୱତଃସ୍ଫୂର୍ତ୍ତି ହୋଇଥାଏ, ସେହିପରି ଅସୁର ଯୁଗରେ ଆସୁରୀ ଭାବର ଆତିଶଯ୍ୟ ଫଳରେ ସାଧାରଣଙ୍କ ଭିତରୁ ଦୈବୀ ଭାବର ଉତ୍‌ଥାନ ହୋଇଛି ଏବଂ ଲୋକସମର୍ଥନର ଅଭାବରୁ ବିଭିନ୍ନ ଯୁଗରେ ଏ ପ୍ରକାର ଆସୁରୀ ସଭ୍ୟତା ଧ୍ୱଂସ ପାଇଛି ।

ରୋମ, ଗ୍ରୀସ୍, ଇଜିପ୍ଟ ଆଦି ସଭ୍ୟତା ଏବଂ ଯାନ୍ତ୍ରିକ ସଭ୍ୟତାର ଧ୍ୱଂସ ପାଇବାର କାରଣ ଅନୁସନ୍ଧାନ କଲେ ଜଣାଯିବ ଯେ, ଏମାନଙ୍କର ସଭ୍ୟତା ସହରୀ (urban) ହେବା ଫଳରେ ସନ୍ଦେହ, ଅଶାନ୍ତି, ବ୍ୟଭିଚାର, ପ୍ରତିଯୋଗିତା, ସଂଘର୍ଷ ଓ ଯୁଦ୍ଧ ଆଦି ସହରୀ ଜୀବନର ଅବଶ୍ୟମ୍ଭାବୀ ମନ୍ଦଗୁଣ ସବୁ ବୃଦ୍ଧି ପାଇ ସଭ୍ୟତାର ମୂଳଭିତ୍ତିକୁ ଦୋହଲାଇ ଦିଏ ଏବଂ ଫଳତଃ ଏପରି ସଭ୍ୟତାର ସ୍ଥିତି ବେଶି ଦିନ ରହେନାହିଁ । ମାତ୍ର ଭାରତୀୟ ଆର୍ଯ୍ୟ ସଂସ୍କୃତି ଗାଁକୁ କେନ୍ଦ୍ରକରି ରହିଛି ବୋଲି ଗାଁ ଜୀବନର ସହାବସ୍ଥାନ, ସହାନୁଭୂତି, ଦୟା, କ୍ଷମା, ସ୍ନେହ ଓ ପରସ୍ପର ସୁଖ ଦୁଃଖରେ ଭାଗୀ ହେବା ଆଦି ଦୈବୀ ଭାବର ଅଭିବୃଦ୍ଧି ଫଳରେ ତାହା କାଳର ଏତେ ଘାତପ୍ରତିଘାତ ସହି ସମ୍ଭାଳି ରହିପାରିଛି । ଯେତେ ଦିନ ଗାଁ ହିଁ ସମସ୍ତ କାର୍ଯ୍ୟର କେନ୍ଦ୍ର ହୋଇ ରହିଥିବ, ଗାଁ ହିଁ ଭାରତର ଜୀବନ ହୋଇ ରହିଥିବ, ସେତେ ଦିନ ଏ ସଭ୍ୟତା, ଏ ସଂସ୍କୃତିର ଚେର ଉପାଡ଼ିବା ଅସମ୍ଭବ ।

ଏବେ ସହରୀ ସଭ୍ୟତାର ଛାପ ଆମ ସଂସ୍କୃତିରେ ଅଧିକରୁ ଅଧିକ ପଡ଼ୁଥିବାର ଜଣାପଡ଼ୁଛି । ତେଣୁ ଯେ ଅବଶ୍ୟମ୍ଭାବୀ ଉପଦ୍ରବମାନ ଦେଖାଦେଇଛି, ସେଥିରେ ସମସ୍ତେ ଅସନ୍ତୋଷ ବହ୍ନିରେ ଜଳି ପୋଡ଼ିଲା ପରି ହୋଇଛନ୍ତି । ସେଥିଲାଗି ପୁଣି ଏବେ, "ଗାଁକୁ ଚାଲ,

ଗାଁକୁ ଗ୍ଲ" ଏପର ଧ୍ୱନି ଦେବା ଆବଶ୍ୟକ ମନେହେଉଛି । ଗାଁର ଧନ୍ଦାମାନ ପୁଣି ଯେପରି ଗଢି ଉଠିବ, ଗ୍ରାମବାସୀ ଯେପରି ଗାଁରେ ହିଁ ସେମାନଙ୍କର ସମସ୍ତ ପ୍ରକାର ଧନ୍ଦା ପାଇବେ, ଆମ ଗାଁର ଧନ ଯେପରି ଗାଁ ବାହାରକୁ ବାହାରି ନ ଯାଏ ଏବଂ ଗାଁ ଯେପରି ପୁଣି ସମୃଦ୍ଧିଶାଳୀ ହୋଇ ସୁଖ, ଶାନ୍ତି ଓ ଆନନ୍ଦରେ ହସି ଉଠିବ, ସେ ଆଡ଼କୁ ଲୋକଙ୍କର ଦୃଷ୍ଟି ଫେରୁଛି ଏବଂ ଭବିଷ୍ୟତରେ ଯେ ଅଧିକ ଫେରିବ, ଏ ଆଶା ରହିଛି । ତେଣୁ ମହାତ୍ମା ଗାନ୍ଧୀ ରାମରାଜ୍ୟ ସ୍ଥାପନର କଳ୍ପନା ରଖି "କଳକୁ ହଟାଅ" ଏବଂ "ଗାଁକୁ ଫେର" ଏ ପ୍ରକାର ଧ୍ୱନି ଦେଇଗଲେ ।

ସେହି ଲକ୍ଷ୍ୟ ହାସଲ ପାଇଁ 'ରବିବାର କଥା' ନାମ ଦେଇ କେତେଖଣ୍ଡି ପୁସ୍ତକ ଲେଖିବାର ଇଚ୍ଛା ହୋଇଛି । 'ରବିବାର କଥା' ୧ମ ଖଣ୍ଡରେ ୮ଟି ପ୍ରବନ୍ଧ ରହିଛି । ଏ ସମସ୍ତ ଲେଖା 'ନବଜୀବନ' ମାସିକ ପତ୍ରିକାରେ ଆଗରୁ ପ୍ରକାଶିତ ହୋଇଛି । ଏହାପରେ ଏହିପରି ଆଉ କେତେ ଖଣ୍ଡି ପୁସ୍ତକ ଲେଖିବାର ବାସନା ରହିଛି ।

ଏ ପୁସ୍ତକ ପଢ଼ି ଯଦି "ମୋ ଗାଁ କାନ୍ଦୁଛି, ଏଣିକି ସେ ଏଥର ହସିବ" ଏପରି ଭାବ ପାଠକଙ୍କ ମନରେ ଆସେ, ଗ୍ରାମ, ଗ୍ରାମ ଧନ୍ଦା ଏବଂ ଗ୍ରାମଧନ୍ଦାନିଃସୃତ ଦ୍ରବ୍ୟପ୍ରତି କଅଣ ପ୍ରେମ ଜାତ ହୋଇ ପାରେ, ତେବେ ଏ ଲେଖା ସଫଳ ହୋଇଛି ବୋଲି ଲେଖକ ମନେ କରିବ ଏବଂ "ପ୍ରଭୁଙ୍କର କୃପାଦୃଷ୍ଟି ପଡ଼ିଛି" ବୋଲି ଭାବି କୃପାସିନ୍ଧୁଙ୍କ ପାଦପଦ୍ମରେ କୃତଜ୍ଞତା ଜ୍ଞାପନପୂର୍ବକ ଭକ୍ତିର ଅର୍ଘ୍ୟ ପ୍ରଦାନ କରିବ ।

ବିନୀତ

**ଲେଖକ**

# ଭାବିବାର କଥା

## ବିଜ୍ଞାନ ଓ ସମାଜ

'ବିଜ୍ଞାନ' କହିଲେ ଆମ୍ଭେମାନେ କ'ଣ ବୁଝୁ ? ସାଧାରଣତଃ ମଟର, ରେଲ୍, ଉଡ଼ାଜାହାଜ, ବଡ଼ ବଡ଼ କାରଖାନା, ରକେଟ୍ ଏବଂ ପରମାଣୁ ଶକ୍ତି—ଏହି ସବୁକୁ ବିଜ୍ଞାନ ବୋଲି ଧରିଥାଉଁ । ଏତାଦୃଶ ବୈଜ୍ଞାନିକ ଯୁଗରେ ପାଦରେ ନ ଚାଲି ଯାନରେ ଚାଲିବାକୁ ଏବଂ ହାତରେ କାମ ନ କରି କୌଣସି ଯନ୍ତ୍ରରେ କାମ କରିବାକୁ ଯୁଗୋପଯୋଗୀ ମନେକରୁ ; ଠିକ୍ ସେହିପରି ସାମାନ୍ୟ ଠୁଣୁକା-ଠୁଣୁକ, ମୁକ୍ତପବନ, ସୂର୍ଯ୍ୟାଲୋକ ଓ ବନସ୍ପତିଦ୍ୱାରା ରୋଗ ଆରୋଗ୍ୟ କରିବାଠାରୁ ବଡ଼ ବଡ଼ ଡାକ୍ତର ଓ ଜଟିଳ ଔଷଧର ଆଶ୍ରୟ ନେଉଁବା, ଗୋରୁଗାଡ଼ିକୁ ହଟାଇ ତା ସ୍ଥାନରେ ମୋଟରସର୍ଭିସ୍ ଚଳାଇବା ଏବଂ କୁଟୀର ଶିଳ୍ପ ବଦଳରେ ବଡ଼ ବଡ଼ କାରଖାନା ବସାଇବା ଇତ୍ୟାଦି ବୈଜ୍ଞାନିକ ଯୁଗରେ କରଣୀୟ ବୋଲି ମନେ କରାଯାଏ । ଉଦାହରଣସ୍ୱରୂପ, କୌଣସି ଗୋଟିଏ ଯନ୍ତ୍ର—ଉଡ଼ାଜାହାଜକୁ ଦେଖାଯାଉ । ଉଡ଼ାଜାହାଜ ତ ବିଜ୍ଞାନ ନୁହେ । ଏ ବିଷୟରେ ବିଜ୍ଞାନ ଜାଣିବାକୁ ହେଲେ ତାର ପ୍ରତ୍ୟେକ ଅଂଶର

କାମ କପର ହେଉଛି ଖାଲି ଜାଣିବାକୁ ଦେଲେ ତ ହେବ ନାହିଁ। ସେପର ଜ୍ଞାନ ତ ଆଂଶିକ ଜ୍ଞାନ ହେବ । ତା'ର ପ୍ରପେଲର କପର ବୁଲୁଛି, କପର ଉଡ଼ାଜାହାଜ ଉପରକୁ ଉଠୁଛି ଏବଂ ତାର ବଭିନ୍ନ ଅଂଶର ପ୍ରକିୟା କ'ଣ, ତା ସହିତ ଉଡ଼ାଜାହାଜ ସମ୍ବନ୍ଧରେ ଅନ୍ୟ ସମସ୍ତ ପ୍ରକାର ଜ୍ଞାନ ହାସଲ ହେଲେ ଯାଇଁ ସେ ବଷୟରେ ଲୋକ ବଜ୍ଞାନ ଜାଣିବ—ଯଥା : ଉଡ଼ାଜାହାଜ ବଗିଡ଼ଗଲେ କପର ସଜାଡ଼ ହେବ, ଉଡ଼ାଜାହାଜ ପୂର୍ବରୁ ସମାଜର କ ଅବସ୍ଥା ଥିଲା ଏବଂ ପରେ ସମାଜ ଉପରେ କ ପ୍ରଭାବ ପଡ଼ୁଛି ; ଉଡ଼ାଜାହାଜ ଫଳରେ ଲୋକର ସୁଖଶାନ୍ତି ଓ ସୁବଧା ଅଧିକ ହୋଇଛି ନା ଓଲଟା ଫଳ ଫଳୁଛି ; ଲୋକସମାଜରୁ ତାହା ଭୟ, ଭ୍ରାନ୍ତି ଓ ସନ୍ଦେହ ହଟାଇବାରେ ସାହାଯ୍ୟ କରୁଛି ନା ସେ ସବୁ ବୃଦ୍ଧି କରାଇଛି ; ଏବଂ ଯୁଦ୍ଧର ବଭୀଷିକା କମାଇଛି ନା ବୃଦ୍ଧି କରାଇଛି ଇତ୍ୟାଦ ବଷୟରେ ସମସ୍ତ ପ୍ରକାର ଜ୍ଞାନ ହାସଲ କରିବାକୁ ପଡ଼ିବ ।

ହାତୀକୁ ଯେ ଆଦୌ ନ ଦେଖିଛି ବା ଉପଲବ୍ଧିରେ ନ ଆଣିଛି, ସେ ହାତୀ ବଷୟରେ ଅଜ୍ଞାନ । ମାତ୍ର କେତୋଟି ଅନ୍ଧ ହାତୀ କପର ଜାଣିବାକୁ ଚେଷ୍ଟା କରି, କଏ ଲାଙ୍ଗୁଡ଼କୁ ଛୁଇଁ କହୁଛି ହାତୀ ଦଉଡ଼ ପର, କଏ ଗୋଡ଼କୁ ଛୁଇଁ କହୁଛି ହାତୀ ଖୁଣ୍ଟ ପର ଏବଂ କଏ ଶୁଣ୍ଢକୁ ଛୁଇଁ କହୁଛି ହାତୀ ସାପ ପର ଇତ୍ୟାଦ—ଏ ପ୍ରକାର ଏକତରଫା ଜ୍ଞାନ ସ୍ୱଳ୍ପଜ୍ଞାନ ମାତ୍ର । ସ୍ୱଳ୍ପଜ୍ଞାମୀ ନଜର ଲବ୍ଧଜ୍ଞାନକୁ ତଦ୍ରୂପ ପ୍ରଚ୍ଚର ଓ ପରପ୍ରଚ୍ଚର କରିବା ଫଳରେ ସମାଜ ଉପରେ ଅପରିପକ୍ୱ ଜ୍ଞାନର ପ୍ରମାଦପୂର୍ଣ୍ଣ ମନ୍ଦ ପ୍ରଭାବ ପଡ଼ୁଥାଏ । ବରଂ ଅଜ୍ଞାନ ଶ୍ରେୟ, ମାତ୍ର ସ୍ୱଳ୍ପଜ୍ଞାନର ପରଣାମ ଭୟାବହ । "Where ignorance is a bliss, it is folly to be wise" ଅର୍ଥାତ୍ ଯାହା ନ ଜାଣିଲେ ମଙ୍ଗଳ ହେବ ତାହା ଜାଣିବା ବୋକାମୀ ।

କେହି ଯଦି କୌଣସି ପ୍ରକ୍ରିୟା ଫଳରେ ଆମ୍ବଗଛରେ ପଣସ ଏବଂ ପଣସଗଛରେ ଆମ୍ବ ଏପରି ଫଳାଇ ପାରିଲା, ତାକୁ ତ କେବଳ ବିଜ୍ଞାନ କୁହାଯାଇ ନ ପାରେ । ତାହା କୁହୁକ ପରି ମନ-ଭୁଲାଣିଆ ହୋଇପାରେ ସତ, ମାତ୍ର ଆମ୍ବଗଛରେ ଯେଉଁ ପଣସ ଫଳିଲା, ତାହା ଖାଦ୍ୟ ହିସାବରେ ମନୁଷ୍ୟର କେତେଦୂର ଉପଯୁକ୍ତ ହେଲା, ତା ତ ବିଗ୍ଭର କରିବାର ଅଛି । ସେହି ପଣସ ଖାଇ ଲୋକ ଯଦି ରୋଗଗ୍ରସ୍ତ ହୁଏ, ଏବଂ ସେ ରୋଗ ନିରାକରଣ ପାଇଁ ବିଭିନ୍ନ ବିଷାକ୍ତ ଔଷଧିର ପ୍ରସ୍ତୁତିକରଣ ଗ୍ଭଲେ, ପୁଣି ଔଷଧିର ବିଷକ୍ରିୟା ଦୂର କରିବା ଲାଗି ନୂଆ ନୂଆ ଔଷଧିର ପ୍ରକରଣ ଗ୍ଭଲେ, ସେଥିପାଇଁ ଡାକ୍ତର ଓ ଡାକ୍ତରଖାନାର ବୃଦ୍ଧି ହୁଏ, ତେବେ ସେ ପଣସ ଖାଇ ଲାଭ କଣ ହେଲା ? ସେ ପଣସ ନ ଖାଇଲେ ତ ବରଂ ଭଲ । ଯଦି ସେ ପଣସ ଖାଦ୍ୟ ପାଇଁ ଅନୁପଯୁକ୍ତ, ତେବେ ସେପରି ଫଳ ଫଳାଇ କି ଲାଭ ? ସେପରି କର୍ମରେ ଯେ ଜ୍ଞାନ ମିଳିଲା ତାକୁ ବିଜ୍ଞାନ ବୋଲି କିପରି କହିବା ? ତାହା ଅପୂର୍ଣ୍ଣ ଜ୍ଞାନ ବା ସ୍ୱଳ୍ପଜ୍ଞାନ ମାତ୍ର ।

ସୁସ୍ଥ ଜୀବନ ବିଷୟ ଧରାଯାଉ । ବ୍ୟକ୍ତିବିଶେଷ ସୁସ୍ଥ ରହନ୍ତୁ, ସୁସ୍ଥ ଦେହରେ ମନ ସୁସ୍ଥ ରହିବ । ତେଣୁ ପ୍ରତ୍ୟେକ ବ୍ୟକ୍ତିର,ସମାଜର ଏବଂ ଜାତିର ସୁସ୍ଥ ଜୀବନ କାମ୍ୟ । ଖାଲି କାମନା କଲେ ତ ଚଳିବ ନାହିଁ, ତଦନୁଯାୟୀ ପ୍ରୟାସ, ଚେଷ୍ଟା ଓ ଜୀବନ ନିର୍ବାହ ଆବଶ୍ୟକ । ତେଣୁ ଯେଉଁ ନିୟମଗୁଡ଼ିକ ପାଳନ କରିବାଦ୍ୱାରା ଲୋକ ସୁସ୍ଥରହିବ ତାହା ବିଜ୍ଞାନସମ୍ମତ ହେବ । କିନ୍ତୁ ଯାହା ପାଳନ କରିବାଦ୍ୱାରା ଲୋକ ସୁସ୍ଥ ରହିବା ଦୂରେ ଥାଉ ବରଂ ଅଧିକ ଅସୁସ୍ଥ ଓ ରୋଗଗ୍ରସ୍ତ ହେବ ତାହା ତ ବିଜ୍ଞାନସମ୍ମତ ହୋଇ ନ ପାରେ ।

ମନେକର ସୁସ୍ଥ ଜୀବନ ପାଇଁ ବ୍ରହ୍ମଚର୍ଯ୍ୟପାଳନ ଆବଶ୍ୟକ, ଖାଦ୍ୟପେୟ, ମଳମୂତ୍ରତ୍ୟାଗ ଓ ସ୍ନାନାଦି ନିତ୍ୟକର୍ମରେ ସମୟାନୁବର୍ତ୍ତିତା ଆବଶ୍ୟକ ; ସୁଖାଦ୍ୟ ଭୋଜନ ଅଖାଦ୍ୟ-ବର୍ଜନ, ମୁକ୍ତ ପବନ ଓ ସୂର୍ଯ୍ୟାଲୋକ ଇତ୍ୟାଦି ବି ଆବଶ୍ୟକ । ତେଣୁ ଯେଉଁ ପଦ୍ଧତି ଏ ସମସ୍ତ ପ୍ରକ୍ରିୟାର ଅନୁକୂଳ ହେବ ସେ ସବୁ ବିଜ୍ଞାନସମ୍ମତ ନିଶ୍ଚୟ ହେବ । ଏଥିପାଇଁ ଯଦି ବ୍ରାହ୍ମମୁହୂର୍ତ୍ତରୁ ଉଠିବା, ଉପାସନା କରିବା, ଗୁରୁଜନଙ୍କୁ ଭକ୍ତି କରିବା, କ୍ରୋଧ, ଭୟ ଏବଂ ଲୋଭ ବର୍ଜନ କରିବା ଏବଂ କାୟମନୋବାକ୍ୟରେ ସଂଯମ ରକ୍ଷାକରିବା ଆବଶ୍ୟକ ହୁଏ, ତେବେ ତାହା ବିଜ୍ଞାନସମ୍ମତ ହେବ । ଖାଣ୍ଟିଦୁଧ ପାଇଁ ଘରେ ଗାଈ ପାଳିବା ବି ବିଜ୍ଞାନସମ୍ମତ ହେବ । ସୁସ୍ଥ ଜୀବନ ପାଇଁ କାୟିକ ପରିଶ୍ରମ ଲୋଡ଼ା; ତେଣୁ ହାତରେ କାମ କଲେ, ଗୋଡ଼ରେ ଚାଲିଗଲେ ବା ଦେହ ମେହନତି କଲେ ଯଦି ଯେତିକ ଶାରୀରିକପରିଶ୍ରମ ଲୋଡ଼ା ତାହା ହୋଇଗଲା, ତାହା ବି ବିଜ୍ଞାନସମ୍ମତ । ଯଦି କ୍ରୋଧ ମନୁଷ୍ୟର ଶକ୍ତି ଓ ଆୟୁଷ କ୍ଷୟ କରେ ଏବଂ ଅନ୍ୟଦ୍ୱାରା କାମ କରାଇଲେ କ୍ରୋଧ ଉପୁଜିବାର ସମ୍ଭାବନା ରହେ, ତେବେ ସେ କ୍ଷେତ୍ରରେ ସ୍ୱତଃ ନିଜେ କାମ କରିନେଲେ ଏକେ ତ କାହା ଉପରେ କ୍ରୋଧ ଆସିଲାନି, ପୁଣି ଶରୀର ରକ୍ଷା ପାଇଁ ଯେତିକ ଦେହ ମେହନତି ଆବଶ୍ୟକ ସେତିକ ବି ହୋଇଗଲା ; ତେଣୁ ଏ ପ୍ରକାର କାମ ବି ବିଜ୍ଞାନସମ୍ମତ । ମାତ୍ର ଯେଉଁ ପ୍ରକ୍ରିୟା ସୁସ୍ଥ ଜୀବନର ପରିପନ୍ଥୀ ତାହା ବିଜ୍ଞାନସମ୍ମତ ହେବ ବା କିପରି ?

ଶିକ୍ଷାଦୀକ୍ଷା, ସିନେମା, ଥିଏଟର, ଟେଲିଭିଜନ, ରେଡ଼ିଓ, ଲିଜଡ଼୍ଷ୍ଟିକର ଏବଂ ନାନାପ୍ରକାର ବିଳାସ ସାମଗ୍ରୀର ପ୍ରଚୁର ପରି-ପ୍ରଚୁର ଫଳରେ ବ୍ରହ୍ମଚର୍ଯ୍ୟ ପାଳନରେ ଯଦି ବାଧା ଆସେ, ବ୍ୟକ୍ତିର ଶାରୀରିକ ଶକ୍ତିର ଅପଚୟ ଘଟେ, ତେବେ ତାହା ବିଜ୍ଞାନସମ୍ମତ

ହେବ କିପରି ? ଏ ଶରୀର ରକ୍ଷା ପାଇଁ କାୟିକ ପରିଶ୍ରମ ଲୋଡ଼ା, ଅଥଚ ଯେଉଁ ଜ୍ଞାନ ମନୁଷ୍ୟକୁ ପରିଶ୍ରମକାତର କରେ, ତାହା ବିଜ୍ଞାନ ପଦବାଚ୍ୟ ହୋଇ ନପାରେ । ଗୁହା, ସିଗାରେଟ୍ ଓ ତମାଖୁ ଯଦି କ୍ଷତିକାରକ, ତେବେ ତାକୁ ଆଇନ ଦ୍ୱାରା ହେଉ ବା ପ୍ରଚାର ଦ୍ୱାରା ହେଉ ଲୋକସମାଜରେ ପ୍ରସାର କରାଇବା ବିଜ୍ଞାନୀର କର୍ତ୍ତବ୍ୟ ହେବ ନାହିଁ । ଡାଲଡା ଶରୀରର କ୍ଷତି କରେ ବୋଲି କେତେକ ବିଶେଷଜ୍ଞ ମତ ଦେବାବେଳେ, ବ୍ୟବସାୟୀ ମନୋବୃତ୍ତି ନେଇ ତା'ର ପ୍ରଚାର ଚଳାଇବା ବିଜ୍ଞ କାର୍ଯ୍ୟ ହେବ ନାହିଁ । ଢିଙ୍କିକୁଟା ଚାଉଳ ଏବଂ ଘଣାପେଡ଼ା ତେଲ ଯଦି ସ୍ୱାସ୍ଥ୍ୟ ପକ୍ଷରେ ଭଲ, ତେବେ ଚାଉଳ କଳ ଏବଂ ତେଲ ପେଡ଼ାକଳ ବୃଦ୍ଧି ହେବା ଯୁକ୍ତିଯୁକ୍ତ ମନେ ହେଉନାହିଁ ।

ଯେଉଁଠି ଅଧିକାଂଶ ଲୋକ ବେକାର, ଯେଉଁଠି ସାମାନ୍ୟ କେତୋଟି ଚାକିରି ପାଇଁ ବହୁ ଅଧିକ ସଂଖ୍ୟାରେ ପ୍ରାର୍ଥୀଙ୍କର ଭିଡ଼ ହେଉଛି, ଯେଉଁଠି ଲୋକଙ୍କୁ କିପରି ଧନ୍ଦା ଦିଆଯିବ ତା'ର ବିଚାର ଚାଲିଛି, ସେ ସ୍ଥାନରେ କୁଟୁଣୀଙ୍କର ସମ୍ବଳ ଢିଙ୍କିକୁ ନିକାଲି ତା ସ୍ଥାନରେ ଚାଉଳକଳ ବସାଇବା ; ତେଲିର ଘଣାକୁ ହଟାଇ ତେଲକଳ ବସାଇବା, ତନ୍ତୀଙ୍କ ସମ୍ବଳ ହାତତନ୍ତ ବଦଳରେ ଲୁଗାକଳ ବସାଇବା ଏବଂ ଚାଷୀଙ୍କର ହଳ ବଦଳରେ ଟ୍ରାକ୍ଟର ପ୍ରୟୋଗ କରିବା ଇତ୍ୟାଦି ବୈଜ୍ଞାନିକ ଦୃଷ୍ଟିକୋଣରୁ ଯୁକ୍ତିଯୁକ୍ତ ମନେ ହେଉନାହିଁ ।

ଲୋକ ରୋଗରୁ ମୁକ୍ତିଲାଭ ଏବଂ ଶରୀରର ରୋଗ ପ୍ରତିରୋଧ ଶକ୍ତି ନିମିତ୍ତ ଯଦି ସାମାନ୍ୟ ଜଡ଼ିବୁଟିର ଉଦ୍ୟାନ କରି ଓ ସୁସ୍ଥ ଜୀବନ ନିୟମରେ ଆନନ୍ଦମୟ ଜୀବନଯାପନ କରି ଡାକ୍ତର ଏବଂ ବିଷାକ୍ତ ଔଷଧର ଆଶ୍ରୟ ନ ଲୋଡ଼ିଲା ଏବଂ ବସନ୍ତ, କଲେରା ଆଦି

ରୋଗପାଇଁ ପ୍ରତିଷେଧକ ଭ୍ୟାକ୍‌ସିନ୍ ବା ଇନ୍‌ଜେକ୍‌ସନ୍ ନେବା ତ ଦୂରେଥାଉ, ଏସବୁ ରୋଗକୁ ନିଜେ ହସି ହସି ଉଡ଼ାଇ ଦେଇ ପାରନ୍ତି, ତେବେ ତା'ର ଜୀବନ ନିର୍ବାହ କ'ଣ ବିଜ୍ଞାନସମ୍ମତ ହେବ ନାହିଁକି ? କିଏ କହିପାରିବ ଯେ ଆମର ପୂର୍ବର ଚିରାଚରିତ ଜୀବନ ପ୍ରବାହ ଏବଂ ଦୈନନ୍ଦିନ କର୍ମପନ୍ଥା ବିଜ୍ଞାନସମ୍ମତ ନ ଥିଲା । ବରଂ ଯଦି ଆଧୁନିକ ପ୍ରକ୍ରିୟା, ଜୀବନଯାତ୍ରା ଏବଂ ଜଟିଳ ବିଷାକ୍ତ ଔଷଧମାନ ରୋଗର ବୃଦ୍ଧି ଘଟାଉଛି, ସେ ସବୁ କିପରି ବିଜ୍ଞାନସମ୍ମତ ସେଥିରେ ମନ ମାନୁନାହିଁ ।

ସିନେମା, ରେଡ଼ିଓ, ଟେଲିଭିଜନ୍ ଏବଂ ଲିଭଫ୍ଲିକର ଲୋକଶିକ୍ଷା ପାଇଁ ଅତ୍ୟାବଶ୍ୟକ ଏବଂ ବିଜ୍ଞାନଯୁଗୋପଯୋଗୀ ବୋଲି କୁହାଯାଇଥାଏ । ମାତ୍ର ଜନସାଧାରଣଙ୍କ ମନ ଉପରେ ଏମାନଙ୍କର କୁହୁକପ୍ରଭାବ ଏତେ ଅଧିକ ହୋଇଥାଏ ଯେ, ବ୍ୟବସାୟୀକୁଳ ନିଜନିଜର ଦ୍ରବ୍ୟବିଶେଷ ଯଥା—ଡାଲଡା, ସିଗାରେଟ୍, ଗୁହା, କଫି, ଟୁଥ୍‌ପେଷ୍ଟ, ପାଉଡ଼ର ଓ ସାବୁନ ଇତ୍ୟାଦିର ବହୁଳ ପ୍ରସାର ଉଦ୍ଦେଶ୍ୟରେ ଲୋକମାନଙ୍କୁ ଭୁଲାଇବା ପାଇଁ ସେ ସମସ୍ତଦ୍ୱାରା ବିଜ୍ଞାପନ, ପ୍ରଚାର ଓ ପରିପ୍ରଚାର କରିଥାନ୍ତି । ଏହାଫଳରେ କେତେକ ଅନିଷ୍ଟକର ପଦାର୍ଥ ଏବଂ ମନୋବୃତ୍ତି ଲୋକସମାଜରେ ପ୍ରସାର ଲାଭ କରିବା ଦ୍ୱାରା ସମାଜର ସାମୂହିକ କ୍ଷତି ସାଧିତ ହୋଇଥାଏ । ଲୋକେ ଅଖାଦ୍ୟକୁ ସୁଖାଦ୍ୟ ମଣି ରୋଗଗ୍ରସ୍ତ ହୁଅନ୍ତି ଏବଂ ଫଳରେ ଡାକ୍ତରଙ୍କର ପରାମର୍ଶ ଲୋଡ଼ିବାକୁ ବାଧ୍ୟ ହୁଅନ୍ତି । ଡାକ୍ତରଙ୍କୁ ଫିସ୍ ମିଳେ ଏବଂ ବ୍ୟବସାୟୀଙ୍କର ଔଷଧ ବି କଟେ । ଡାଲଡା, ସିଗାରେଟ୍, ଗୁହା ଓ କଫି ଆଦି ଅନିଷ୍ଟକର ଦ୍ରବ୍ୟର ଅପକର୍ଷ ସାଧିତ ହୁଏ ନାହିଁ ; ଯେଣୁ ସେମାନେ ବି ନିଜ ନିଜର ଆଚାର ଦ୍ୱାରା ଏଗୁଡ଼ିକର ପ୍ରଚାର ପରୋକ୍ଷରେ କରିଥାନ୍ତି ।

ଡାକ୍ତରଙ୍କର ବ୍ୟବସାୟ ଏବଂ ବ୍ୟବସାୟୀଙ୍କର କାରସାଦ୍ଧ ଏକ ଗୋଲକଧନ୍ଦାପରି ଚାଲୁ ରହେ । ସାଧାରଣ ବ୍ୟକ୍ତି ଏ ସବୁ ସହଜରେ ବୁଝିପାରେ ନାହିଁ ଏବଂ ଗୋଟିଏ ରୋଗରୁ ଅନ୍ୟ ରୋଗକୁ ଆନୟନ କରେ ; ଫଳରେ ବ୍ୟାଧି ଓ ଦୁଃଖ ମନୁଷ୍ୟକୁ ଛାଡ଼ିପାରେ ନାହିଁ । ଯାହାଯୋଗୁଁ ମନୁଷ୍ୟର ଦୁଃଖ ଦୁର୍ଦ୍ଦଶାର ପଥ ଉନ୍ମୁକ୍ତ ରହୁଛି, ତାହା କ'ଣ ବିଜ୍ଞାନସମ୍ମତ ?

ବର୍ତ୍ତମାନ ଯୁଗରେ ବହିଃଜଗତକୁ ନିଜ ଅକ୍ତିୟାରରେ ରଖିବା ପାଇଁ ଲୋକ ଅସୁରର ବଳ ପାଇଛି । ଏହି ଅସମ୍ଭବ ଶକ୍ତି ବଳରେ ମୁଷ୍ଟିମେୟ କେତେକ ଲୋକ ଯେ ସାରା ମେଦିନୀ କମ୍ପାଇ ପାରନ୍ତି ଏବଂ ପାରୁଛନ୍ତି, ତାହା ଜଳଜଳ ଦିଶୁଛି । ସମସ୍ତ ଜଗତ ବର୍ତ୍ତମାନ ସଶଙ୍କିତ, ଭୀତତ୍ରସ୍ତ ଏବଂ କେହି କାହାକୁ ବିଶ୍ୱାସ କରିପାରୁନାହିଁ । ଆନନ୍ଦ ଓ ଶାନ୍ତି ପ୍ରାୟ ଲୋପ ହେବା ଉପରେ । ଯାହାଫଳରେ ବ୍ୟକ୍ତିବିଶେଷଙ୍କୁ ଏ ପ୍ରକାର ଅସମ୍ଭବ ଶକ୍ତି ମିଳି-ପାରିଲା ଏବଂ ସମସ୍ତ ବାତାବରଣ ଭୟ ଓ ସନ୍ଦେହରେ ପରିପୂର୍ଣ୍ଣ ହେଲା, ତାହା କ'ଣ ବିଶେଷ ଜ୍ଞାନର ପରିଚୟ ଦିଏ କି ?

ଏଣେ ବ୍ୟକ୍ତିବିଶେଷ ବହିଃଜଗତକୁ ନିଜ ଅକ୍ତିୟାରରେ ରଖିବାରେ ଅସୁରର ବଳ ପାଇଥିବା ବେଳେ ନିଜକୁ ନିଜ ଆୟତ୍ତରେ ରଖିବା ପାଇଁ ଶିଶୁର ବଳ ବି ପାଇ ପାରୁନାହିଁ । ଅଳ୍ପକେ ଭୁଲି ଯାଉଛି । ପରିଣାମ ଦୃଷ୍ଟିଶକ୍ତି କମିଯାଉଛି । ସଦ୍ୟଫଳକୁ ବିଚାର କରି କର୍ମପନ୍ଥା ନିର୍ଦ୍ଧାରଣ କରୁଛି । ଶ୍ରେୟର ମାର୍ଗ କଣ୍ଟକମୟ ଜଣା ପଡ଼ୁଛି । ପ୍ରେୟର ମାର୍ଗ ବରେଣ୍ୟ ହୋଇଛି । ଆତ୍ମଜ୍ଞାନ ରହୁନାହିଁ । ନିଜେ ଆୟତ୍ତବିହୀନ ହେବା ଫଳରେ ବିନା ଆହୁଲରେ ଡଙ୍ଗା ଯେପରି କୂଳ ନ ମାନି ଏପଟ ସେପଟ ବାଡ଼େଇ ହୋଇ ଦୁର୍ଦ୍ଦଶାଗ୍ରସ୍ତ ହୁଏ, ବ୍ୟକ୍ତି ବିଶେଷର ବର୍ତ୍ତମାନ ଯୁଗରେ ଠିକ୍ ସେହିପରି ଅବସ୍ଥା

ହୋଇଛି । ତେଣୁ ଏତେ ଦୁଃଖ, ଅଶାନ୍ତି ଓ ନିରାନନ୍ଦ ସର୍ବତ୍ର ବ୍ୟାପିଛି । ଯେଉଁ ଜ୍ଞାନ ମନୁଷ୍ୟକୁ ନିଜ ଆୟତ୍ତରେ ରଖିବା ପାଇଁ ଅସମ୍ଭବ ବଳ ଦେବ ଏବଂ ଯେଉଁ ଜ୍ଞାନ ଫଳରେ ସମାଜରେ ମୈତ୍ରୀ, ଭ୍ରାତୃ-ଭାବ, ସହୃଦୟତା, ପରସ୍ପର ପ୍ରତି କରୁଣା, ଦୟା ଓ ସହାନୁଭୂତି ଆଦି ଦୈବୀଭାବର ପ୍ରଭାବ ସର୍ବତ୍ର ପରିଲକ୍ଷିତ ହେବ, ସେହି ଆତ୍ମଜ୍ଞାନର ଘୋର 'ଅଭାବ ବର୍ତ୍ତମାନ ପରିଲକ୍ଷିତ ହେଉଛି । ଯେଉଁ ଆତ୍ମଜ୍ଞାନର ଘୋର ଅଭାବ ହେତୁ ସମାଜରେ ଏତେ ବିପର୍ଯ୍ୟୟ ଘଟିଛି, ସେହି ଆତ୍ମଜ୍ଞାନର କ'ଣ ଜରୁରୀ ଆବଶ୍ୟକତା ନାହିଁ କି ?

ବର୍ତ୍ତମାନ ତଥାକଥିତ ବିଜ୍ଞାନ ଜଗତରେ ମନୁଷ୍ୟ ମୁହୂର୍ତ୍ତିକ ମଧ୍ୟରେ ଅନେକ ଦୂର ଯାଇପାରୁଛି । ପୃଥିବୀ ମନୁଷ୍ୟକୁ ଏତେ ଛୋଟ ମନେ ହେଉଛି, ଯଦ୍ଦ୍ୱାରା ବହୁଦେଶର ଲୋକ ସହଜରେ ଏକାଠି ହୋଇ ପାରୁଛନ୍ତି । ପୂର୍ବେ ବି ଏକାଠି ହେଉଥିଲେ, ମାତ୍ର ତାହା ବହୁ ସମୟସାପେକ୍ଷ ଥିଲା । କିନ୍ତୁ ଗୋଟିଏ ସମ୍ପର୍କ କମି-ବାର ଦେଖାଯାଉଛି । ପୂର୍ବର ହୃଦୟ ମିଳନ ବର୍ତ୍ତମାନ ଦେଖା-ଯାଉନାହିଁ । ବହୁଦେଶର ଲୋକଙ୍କର ଶାରୀରିକ ମିଳନ ହେଉଛି ସତ; ମାତ୍ର ହୃଦୟର ମିଳନ ହେବାତ ଦୂରର କଥା, ବରଂ କାହା ହୃଦୟ କାହା ସହିତ ମିଳୁନାହିଁ । ଏକାଘରେ ପିତାପୁତ୍ର, ଭାଇଭାଇ, ସ୍ୱାମୀ ସ୍ତ୍ରୀ ଏବଂ ମା ପୁଅ—ଏମାନଙ୍କର ହୃଦୟ ମିଳନର ଅଭାବ ପରିଲକ୍ଷିତ ହେଉଛି । କେହି କାହାକୁ ପୂର୍ଣ୍ଣପ୍ରାଣରେ ବିଶ୍ୱାସ କରୁନାହିଁ । ଏ ପ୍ରକାର ହୃଦୟର ଅମେଳ ବେଳୁଁବେଳ ଅଧିକ ବଢ଼ିବାରେ ଲାଗିଛି । ହୁଏନ୍‌ସାଂ ପାହାଡ଼, ବଣ, ସମୁଦ୍ର ଓ ନାନାଦେଶ ବହୁ ଆୟାସ ସହ ଏବଂ ବହୁଦିନଯାବତ୍ ଅକ୍ଳାନ୍ତ ପରିଶ୍ରମ ସହକାରେ ଏ ଦେଶକୁ ଆସି ଏଠାରେ ଲୋକଙ୍କ ହୃଦୟର ଯେତେ ନିକଟରେ ପହଞ୍ଚିପାରିଥିଲେ, ଏବର ସାଂସ୍କୃତିକ ଏବଂ ବିବିଧ

ଦେଶର ପ୍ରତିନିଧି ପରସ୍ପରର ଅତି ନିକଟରେ ଥାଇ ସୁଦ୍ଧା ପରସ୍ପର ପ୍ରତି ସେପରି ସହୃଦୟ ହୋଇ ପାରୁଛନ୍ତି କି ? ବରଂ ଦିନୁଁ ଦିନ ପରସ୍ପରଠାରେ ସନ୍ଦେହ ବଢ଼ୁଛି ଏବଂ ଆତଙ୍କ ଯେ ବେଶୀ ବଢ଼ିବ ତାହା ଅନୁମେୟ ହେଉଛି । ଚିଠି ଯେପରି ଖୁବ୍ ଶୀଘ୍ର ପହଞ୍ଚୁଛି, ରୋଗ ଓ ଭୟ ଠିକ୍ ସେପରି ବି ଶୀଘ୍ର ପହଞ୍ଚିଯାଉଛି । ଏ ପ୍ରକାର ସଭ୍ୟତାର କ୍ରମବୃଦ୍ଧି ଯେ କେତେଦୂର ମଙ୍ଗଳପ୍ରଦ ତହିଁରେ ସନ୍ଦେହ ଉପୁଜୁଛି ।

ବର୍ତ୍ତମାନ ଯୁଗରେ ସବୁ ତ ଟଙ୍କାପଇସାରେ ମାପ କରାଯାଉଛି । ତଥାକଥିତ ବିଜ୍ଞାନ ତ ସବୁ ଏପରି ତଉଲ କରି ମାପି-ଚୁପି ଠିକ୍ କରୁଛି, କିଏ କମ୍ କିଏ ବେଶୀ । କିନ୍ତୁ କିଏ ବେଶୀ ସୁଖପାଉଛି କିଏ ବା କମ୍ ପାଉଛି, କାହାର ବେଶୀ ଆନନ୍ଦ କାହାର ବା କମ୍, ତାକୁ କେଉଁ ଯନ୍ତ୍ର ମାପି ପାରିବ ? ଲକ୍ଷେ ମୁଦ୍ରାପ୍ରାପ୍ତି ଅଥବା ହଜିଯାଇଥିବା ଏକମାତ୍ର ପୁତ୍ରଧନପ୍ରାପ୍ତି, କେଉଁଥିରେ ଯଶୋଦାପରି ମା'ର ଅଧିକ ଆନନ୍ଦ, ତାହା କେଉଁ ଯନ୍ତ୍ର ଠିକ୍ କରିପାରିବ ? ମୃତ୍ୟୁ ଯେ ଅମୃତର ସୋପାନ ହୋଇପାରେ ତାହା ବର୍ତ୍ତମାନର କେଉଁ ବିଜ୍ଞାନ ଶିକ୍ଷା ଦେଇ ପାରିବ ? ହରିଶ୍ଚନ୍ଦ୍ରଙ୍କ ଦାନର ମହିମା, ଏବଂ ଏକଲବ୍ୟର ଏକନିଷ୍ଠ ଗୁରୁଭକ୍ତିର ମହିମା ; ଆତ୍ମଜ୍ଞାନରହିତ ଏ ତଥାକଥିତ ବିଜ୍ଞାନ କଣ ବୁଝାଇବାରେ ସମର୍ଥ ହେବ ?

ଏବେ ମାନବର ସମ୍ପର୍କ ମାନବ ସହିତ ଅଧିକ ନ ହୋଇ ନିର୍ଜୀବ କର୍କଶ ଯନ୍ତ୍ର ସହିତ ଅଧିକ ହେବାର ଦେଖାଯାଉଛି । ସମସ୍ତ କାର୍ଯ୍ୟ ଯନ୍ତ୍ର ସାହାଯ୍ୟରେ କରିବାର ଅଭିଳାଷ ଅଧିକରୁ ଅଧିକ ପୋଷଣ କରାଯାଉଛି । ତେଣୁ ସ୍ନେହ, ଦାକ୍ଷିଣ୍ୟ, ଦୟା, ଶ୍ରଦ୍ଧା, ପ୍ରୀତି ଓ ଭ୍ରାତୃଭାବ ଆଦି ସ୍ୱଭାବସିଦ୍ଧ ଗୁଣର ବିକାଶ ନିମିତ୍ତ ବ୍ୟକ୍ତି ଏ

ଯନ୍ତ୍ରଯୁଗରେ ବାସ୍ତବ କ୍ଷେତ୍ର ପାଇପାରୁନାହିଁ । ଯନ୍ତ୍ରର କଣ ବୋଧ-ଶକ୍ତି ଅଛି ଯେ ବ୍ୟକ୍ତି ତାହାଠାରୁ ସ୍ନେହ ଓ ଦୟାଦ୍ଧ ଗ୍ରହିଁଲେ ପାଇ ପାରିବ ? ମା'ର ଖାଦ୍ୟ ଦେବାରେ ଯେ ସ୍ନେହତକ ଅଛି, ତାହା ବ୍ୟକ୍ତି କେଉଁ ଯନ୍ତ୍ରରୁ ପାଇ ପାରିବ ? ଯାନ୍ତ୍ରିକ ସଭ୍ୟତାରେ ସେ ସ୍ନେହ ଓ ସେ ସନ୍ତୁଷ୍ଟ ନୟନର ଭାବ ମିଳିବ କୁଆଡ଼ୁ ? ତେଣୁ ମନୁଷ୍ୟର ସରସ ଦିବ୍ୟଭାବର ଉତ୍ସ କ୍ରମେ ଶୁଖି ଯାଉଛି, ହୃଦୟର ମଧୁର ସ୍ପନ୍ଦନର ଅଭାବ ସର୍ବତ୍ର ପରିଲକ୍ଷିତ ହେଉଛି । ମନୁଷ୍ୟଠାରେ କର୍ମମତା ବଡ଼ ଜଘନ୍ୟରୂପରେ କ୍ରମେ ଦେଖାଦେଉଛି । ଏ ଯେଉଁ ଯନ୍ତ୍ରପାତି ଓ କଳକାରଖାନାର ବୈଭବ, ଯେଉଁ ନୂତନ ଯନ୍ତ୍ରଶକ୍ତିର ମୁହୁର୍ମୁହୁଃ ଆବର୍ତ୍ତ, ତାକୁ ଏଡ଼ି ପାରିବାର ଶକ୍ତି କାହାର ନାହିଁ । ବେଳେ ବେଳେ ଏ ଯନ୍ତ୍ର ରାକ୍ଷସର ଯନ୍ତ୍ରଣାରେ ଡେଜାଟେଡ୍ ଭିଲେଜ୍‌ର (Deserted village) ଲେଖକ ଗୋଲ୍ଡସ୍ମିଥ୍‌ଙ୍କ ପରି ଅସହାୟ ଲୋକ ଏ ଯନ୍ତ୍ର ଗ୍ରାସରୁ କପରି ମୁକ୍ତି ପାଇବ ସେଥିପାଇଁ ଖେଦୋକ୍ତି ପ୍ରକାଶ କରିଥାଏ ।

ବର୍ତ୍ତମାନ ରେଡ଼ିଓ ଓ ଟେଲିଭିଜନ୍ ସାହାଯ୍ୟରେ ଘରେ ବସି ହଜାର ହଜାର ମାଇଲ ଦୂରର ବାର୍ତ୍ତା ଓ ଦୃଶ୍ୟ ଦେଖି ହେଉଛି ; ଅଥଚ ଯାହା ଯାହା ଜାଣିଲେ ବା ଦେଖିଲେ ଅଧିକ ଫଳପ୍ରଦ ହେବ ଏବଂ କାର୍ଯ୍ୟତଃ କିଛି କରି ହେବ ସେ ସବୁ ବାର୍ତ୍ତା କାନରେ ପଡ଼ୁନାହିଁ ବା ସେପରି ଦୃଶ୍ୟ ଆଖିରେ ପଡ଼ୁନାହିଁ । ଯେବେ ବା ସେପରି ପଡ଼ୁଛି, ମନଧ୍ୟାନରେ ତାହା ପ୍ରବେଶ କରି ପାରୁନାହିଁ । ପଡ଼ିଶା ଘରର କ୍ଷୁଧାତୁରର ଆର୍ତ୍ତନାଦ, ସମାଜର ବୁଭୁକ୍ଷୁଜନତାର କରୁଣ ବିକଳ ଦୃଶ୍ୟ ଆଖିରେ ପଡ଼ି ବି ପଡ଼ୁନାହିଁ । ଭାରତର କେଉଁ କୋଣରେ ବସି ବିଲାତର ଟଟକା ଖବର ଏବଂ କୌଣସି ଗାୟକର ମଧୁର ଗୀତ ଶୁଣିବାରେ ଆନନ୍ଦ ମିଳିପାରେ, ତା ସହିତ

କେଉଁ ସିଗାରେଟ, ସ୍ନୋ, କଫି ଓ ଟୁଥ୍‌ପେଷ୍ଟ ଇତ୍ୟାଦି ବରେଣ୍ୟ, ତାହା ବି ଜାଣି ହୁଏ ; ମାତ୍ର ରେଡ଼ିଓ ପ୍ରତି ଆମର ଆଦର ବଢ଼ିବା ସଙ୍ଗେ ସଙ୍ଗେ କାର୍ଯ୍ୟରେ କଣ୍ଢାକର ମୂଲ୍ୟ ଯାହା ଦେବ, ସେପରି ଅତି ନିକଟର ଖବର ବା ଦୃଶ୍ୟ ପ୍ରତି ଆମର ଇତର ମନୋଭାବ ବୃଦ୍ଧି ପାଉଛି । ଅର୍ଥାତ୍ ଏ ତଥାକଥିତ ବିଜ୍ଞାନ ଜଗତ ଆମ ଆଖିକୁ ଏବଂ ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କୁ କୁହୁକ ମନ୍ତ୍ରପରି ଏପରି ଆକର୍ଷଣ କରୁଛି ଯେ ଆମେମାନେ କିଛି ନମାନି ଅନ୍ଧପରି ଅମଣ୍ଡାମଣ୍ଡା ଚାଲୁଛୁ ।

ଭ୍ରମଣ (Excursion) ହେଉଛି, ମାତ୍ର ବହୁଦୂରକୁ, କେବଳ ବିଭିନ୍ନ ସ୍ଥାନ ଦେଖିବାରେ ଗୋଟାଏ ସଉକ ମେଣ୍ଟାଇବା ଉଦ୍ଦେଶ୍ୟ ରଖି ; ସେଥିପାଇଁ ଦ୍ରୁତଗାମୀ ଯାନ ବି ମିଳି ପାରୁଛି । ଦ୍ରୁତଗାମୀ ଯାନରେ ବହୁଦୂର ଅଳ୍ପ ସମୟରେ ଯାଇ ହେଉଛି । ୧୨ ଘଣ୍ଟାରେ ହଜାର ହଜାର ମାଇଲ ଯାଇ ପାରୁଛୁ, ଅଥଚ ନିଜ ଗାଁରେ କିମ୍ବା ନିକଟବର୍ତ୍ତୀ ଗାଁରେ ୧୨ ବର୍ଷରେ ଥରେ ପାଦ ପଡ଼ି ପାରୁନାହିଁ । ଏତେ ନିକଟରେ ଥିବା ଗାଁଗୁଡ଼ିକର ଲୋକଙ୍କ ଅବସ୍ଥା ଜାଣିଲେ ହୁଏତ କିଛି ପ୍ରତିକାର କରିହୁଅନ୍ତା, ମାତ୍ର ସେମାନେ ଏତେ ନିକଟରେ ଥାଇ ସୁଦ୍ଧା ବହୁଦୂରରେ ଥିବାପରି ଜଣା ପଡ଼ୁଛନ୍ତି ।

ମୁକ୍ତ ପବନ ସୂର୍ଯ୍ୟାଲୋକ ପ୍ରତି ଆଗ୍ରହ ନାହିଁ ଅଥଚ ରୁଦ୍ଧ କକ୍ଷରେ ବିଜୁଳି ପଙ୍ଖା ଓ ଆଲୁଅ ବରେଣ୍ୟ ହୋଇଛି । ସିନେମା ଗୃହର ସିଗାରେଟ୍‌ଧୂମପୂର୍ଣ୍ଣ ରୁଦ୍ଧ ବାତାବରଣରେ ଅସ୍ୱସ୍ତି ବୋଧ ଆସୁନାହିଁ କି ସେଠାରେ ବିଭିନ୍ନ ରୋଗ ସଂକ୍ରମଣର ଭୟ ବି ହେଉନାହିଁ । ଲୋକେ କହନ୍ତି, "ସିନେମାରୁ ବହୁତ ଶିକ୍ଷା କରିବାର ଅଛି । ସିନେମା ହେଉଛି ଲୋକଶିକ୍ଷାର ନିମିତ୍ତ ।" ମାତ୍ର ସିନେମାର

କି ପ୍ରକାର ସତ୍ ପ୍ରଭାବ ସମାଜରେ ପଡ଼ୁଛି ତାହା ପରିଲକ୍ଷିତ ହେଉ ନାହିଁ । ବରଂ ଓଲଟା ଫଳ ଦେଖାଯାଉଛି । ସିନେମାର ଅବାଞ୍ଛନୀୟ କଦର୍ଯ୍ୟ ଚିତ୍ର ମନୁଷ୍ୟର ମନକୁ ଆକର୍ଷଣ କରିଥାଏ ଏବଂ ତା'ର ଦୁର୍ବଳ ମନ ଦୁର୍ବଳତର ହୋଇଥାଏ । ଶିକ୍ଷଣୀୟ ହିସାବରେ କେଉଁ ଚିତ୍ରରେ ଦାନର ମହିମା ତ କେଉଁଥିରେ ଦେଶସେବାର ମହିମା ଏହିପରି ଅଶେଷ ତ୍ୟାଗ, ଭାଇଭଉଣୀ, ମା ପୁଅ ଓ ସ୍ୱାମୀସ୍ତ୍ରୀଙ୍କର ପରସ୍ପର ସ୍ନେହ, ଭକ୍ତି, ଶ୍ରଦ୍ଧା ଏବଂ ଭକ୍ତିରସାତ୍ମକ ଧର୍ମସମ୍ବନ୍ଧୀୟ ଇତ୍ୟାଦି ବିଷୟର ପରାକାଷ୍ଠା ବିଭିନ୍ନ ସିନେମାରେ ଶିକ୍ଷଣୀୟ ହିସାବରେ ପ୍ରସ୍ଫୁଟିତ ହୋଇଥାଏ । କିନ୍ତୁ ବାସ୍ତବରେ କ'ଣ ଏଥିପାଇଁ ସିନେମାର ସୃଷ୍ଟି ? ମନୁଷ୍ୟ ଉପରେ କ'ଣ ଏତାଦୃଶ ସତ୍‌ପ୍ରଭାବ ପଡ଼ୁଥିବାର ଦେଖା ଯାଉଛି ? ଯଦି ସେପରି ସତ୍‌ପ୍ରଭାବ ପଡୁନାହିଁ ତେବେ ଏ ଶୁଷ୍କ ନିର୍ଜୀବ ଚିତ୍ର ପ୍ରଚ୍ଛଦ-ପଟରେ ଦେଖି ମନୁଷ୍ୟ ଆନନ୍ଦ ପାଏ କାହିଁକି ? ତା'ର କାରଣ, ଏ ତଥାକଥିତ ବିଜ୍ଞାନ ଯୁଗରେ ସିନେମାର କୁହୁକମନ୍ତ୍ର ମନୁଷ୍ୟକୁ ଟାଣି ଆଣୁଛି—ଠିକ୍ ଯେପରି ପତଙ୍ଗ ଟାଣିହୋଇ ଆସେ ଅନଳ ଆଡ଼କୁ । ସେ କ'ଣ ବାସ୍ତବ ଦୁନିଆଁରେ ଏତାଦୃଶ ଘଟଣା ଭୂରି ଭୂରି ଦେଖିବାକୁ ପାଉନାହିଁ ? ପ୍ରଚ୍ଛଦପଟରେ ପଥହରା ପିଲା ବାପ ମାଙ୍କୁ ନ ପାଇ ବିକଳ ଭାବରେ "ଆମ୍ମା, ରୋଟି ଦେ, ବାବା, ରୋଟି ଦେ" କହି ଦ୍ୱାର ଦ୍ୱାର ଏବଂ ରାସ୍ତାରେ ଭିକ୍ଷା କରୁଥିବା ବେଳେ ସିନେମାଦର୍ଶୀ ଭାବବିହ୍ୱଳ ହୋଇ ସେହି ରୁଦ୍ଧକକ୍ଷରେ ଥିବାବେଳେ ଅଶ୍ରୁ ଢାଳି ପକାଏ, ଅଥଚ ବାସ୍ତବ ଜଗତରେ ଏପ୍ରକାର ଭିକାରୀ ପିଲା ପ୍ରତି ତାଦୃଶ ଭାବର ଶତାଂଶ ବି ପ୍ରକାଶ ପାଉନାହିଁ । ଏପରି କି ଭିକାରୀ ବହୁଦିନ ନ ଖାଇ ବିକଳ ଭାବରେ ଖାଇବାକୁ ବା ପଇସା ମାଗିଲେ ବେଳେ ବେଳେ ଧକ୍କା ମାରି

ତଡ଼ି ହଉଆଯାଉଛି । ପଇସା ତ ସିନେମା ଦେଖିବାକୁ ନାହିଁ, ଏମାନଙ୍କୁ ଦେବାପାଇଁ ଅଣ୍ଟୁଛି କୁଆଡୁ ? ଏପରି ଅବସ୍ଥାରେ ସିନେମାରୁ ଦାନର ମହତ୍ତ୍ୱ ଦେଖି ଲୋକଶିକ୍ଷା ହେଉଛି କପରି ବୁଝି ହେଉନାହିଁ ।

ସ୍ୱାମୀ ସ୍ତ୍ରୀ ମଧ୍ୟରେ, ରାମ ଲକ୍ଷ୍ମଣଙ୍କ ପରି ଭାଇଭାଇ ମଧ୍ୟରେ ଅକାଟ୍ୟ ସ୍ନେହ ଓ ଭକ୍ତିର ନମୁନା ଚିତ୍ରରେ ଦେଖି ଲୋକ ଭାବବିହ୍ୱଳ ହୋଇ ପଡ଼େ, ଅଥଚ ଘରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମନାନ୍ତର, ଭାଇ ଭାଇ ମଧ୍ୟରେ କଳହ, ଏବଂ ପିତାଠାରେ ପୁତ୍ରର ଅବାଧ୍ୟତା ବେଳେ ବେଳେ ଜଘନ୍ୟ ଆକାରରେ ଦେଖାଦେଉଛି ।

ସମସ୍ତ ସମୟରେ କଳି ମନୋମାଳିନ୍ୟ ଏତାଦୃଶ ଭୀଷଣ ଆକାର ଧାରଣ କରୁଛି ଯେ ପରିଣାମରେ ହତ୍ୟା ବା ଆତ୍ମହତ୍ୟା ହିଁ ତା'ର ସମାଧାନ କରୁଛି । ତ୍ୟାଗର ମହିମା ଚିତ୍ରରେ ଲୋକ ଦେଖୁଛି ସତ, କିନ୍ତୁ ସଂସାରକ୍ଷେତ୍ରରେ ପୂର୍ଣ୍ଣ ଭୋଗୀ ହୋଇ ଚଳୁଛି ଏବଂ ତ୍ୟାଗପୂତ ଅପୂର୍ବ ଆନନ୍ଦର ଅଧିକାରୀ ହୋଇ ପାରୁ ନାହିଁ । ଭକ୍ତିରସାତ୍ମକ ଚିତ୍ର ମନୁଷ୍ୟଙ୍କୁ ନିଜଘରେ ପ୍ରାର୍ଥନା ବା ଦେବାର୍ଚ୍ଚନା କରିବାକୁ ପ୍ରେରଣା ଦେଇପାରୁ ନାହିଁ । ଏହା ହେବାର ପ୍ରଧାନ କାରଣ କ'ଣ ? ସିନେମା ଗୃହରେ ଲୋକ ଭାବପ୍ରବଣ ହୋଇ ସବୁ ଆନନ୍ଦ, ସମଦୁଃଖଭାବ, ଦୟା, ଦାକ୍ଷିଣ୍ୟ ଓ ଦାନର ଭାବ ଏବଂ ସହାନୁଭୂତି— ସମସ୍ତ ସେହି ନିର୍ଜୀବ କାଳ୍ପନିକ ଅବାସ୍ତବ ବ୍ୟକ୍ତି ପାଇଁ ଢାଳି ଦେଇ ଶୂନ୍ୟ ହୃଦୟରେ ଘରକୁ ଫେରିଆସେ । ମନୁଷ୍ୟ ହୃଦୟରେ ଯେଉଁ ଟିକିକ ମହତ୍ତ୍ୱ ଗୁଣ ଥାଏ, ସେ ସବୁ ସେହି ପ୍ରେକ୍ଷାଗୃହରେ ଏପରି ଚରିତାର୍ଥ ହୋଇଥାଏ ଯେ, ଆଉ ଅବଶେଷ ନ ଥାଏ । ସେହି ଚିତ୍ରକୁ ଏପରି କି ବାରମ୍ବାର ଦେଖିବାର ପ୍ରବୃତ୍ତି

ଆସେ, ଶିକ୍ଷାପାଇଁ ନୁହେଁ, କେବଳ ସିନେମାର ସେ କୁହୁକ ମନ୍ତ୍ର ହେତୁ । ପଡ଼ଶାଘର ଲୋକ, ଏପରି କି ବେଳେ ବେଳେ ନିଜ ଘର ଲୋକ ବେମାର ପଡ଼ିଲେ ଯଥାର୍ଥ ସେବାମନୋଭାବ ଜାଗ୍ରତ ହେଉ ନାହିଁ । ତେବେ ଏଥିରୁ ଜଣାଯାଉଛି ସିନେମା ଆମର ଜ୍ଞାନଚକ୍ଷୁ ଉନ୍ମୀଳିତ କରିବା ଠେଣେ ଥାଉ ଯେତିକ ଦୃଷ୍ଟି ଶକ୍ତି ଅଛି ତାକୁ ବି ବିନାଶ କରୁଛି । ମନୁଷ୍ୟ କ୍ରମେ କ୍ରମେ ଅନ୍ତଃସାରଶୂନ୍ୟ ହୋଇ ନିର୍ମମ ହେଉଛି । ତଥାପି ବ୍ୟବସାୟୀଙ୍କର ସିନେମା ବେଶ୍ ଅଗ୍ରଗତି କରି ଚାଲିଛି ଏବଂ ଶୋଷଣ ପ୍ରକ୍ରିୟା ଅଲକ୍ଷ୍ୟରେ ବେଶ୍ ଚାଲୁ ରହିଛି । ଏହା କି କ'ଣ ବିଶେଷ ଜ୍ଞାନର ପରିଚାୟକ ?

ଆମେ ବର୍ତ୍ତମାନ ଏପରି ଅବସ୍ଥାରେ ଉପନୀତ ଯେ ନିଜ ବିଷୟ ଛାଡ଼ି ଅନ୍ୟର ବିଷୟ ବୁଝିବାକୁ ମନ ହେଉନାହିଁ କି ସେତେବେଳକୁ ବେଳ ଅଣ୍ଟୁ ନାହିଁ । ସମସ୍ତେ ମଟର, ଦ୍ରୁତଗାମୀ ଯାନରେ ଦଉଡ଼ କରୁଛନ୍ତି କେବଳ ସ୍ୱାର୍ଥସିଦ୍ଧିପାଇଁ । ତା' ପୁଣି ଅନ୍ୟର ସ୍ୱାର୍ଥରେ ଧୂଳି ପକାଇ । କୌଣସି ପରୋପକାର ବା ସେବାମୂଳକ କାମପାଇଁ ସମୟ ନାହିଁ ବୋଲି ଅଭିଯୋଗ ହେଉଛି । ଯେତେବେଳେ ଏତାଦୃଶ ବିଜ୍ଞାନର ପରାକାଷ୍ଠା ଜଣା ନଥିଲା, ଯେତେବେଳେ ପଦଯାନ ଥିଲା ଏକମାତ୍ର ଯାନ, ହାତ ଥିଲା ପ୍ରଧାନ ଯନ୍ତ୍ର, ସେତେବେଳେ ଏଇ ମଣିଷ ଏ ପ୍ରକାର ସେବାମୂଳକ କାର୍ଯ୍ୟ କରିବାକୁ ବେଳ ପାଉଥିଲା ଏବଂ ସେ ସବୁ କାର୍ଯ୍ୟ ସମ୍ପାଦନକରି ଲୋକ ଆନନ୍ଦଲାଭ ବି କରୁଥିଲା । ମାତ୍ର ତଥାକଥିତ ବିଜ୍ଞାନ ଜଗତରେ ସମୟ ଏବଂ ଦୂରତା (Time and space)କୁ ଜୟକରି ସୁଦ୍ଧା "ଆମର ବେଳନାହିଁ" ବୋଲି କହିବା ଅବାନ୍ତର ଶୁଭୁଛି । କାମ କପରି ସହଳ ଏବଂ ବେଶୀ ପରିମାଣରେ ହେବ ଏବଂ ଅଳ୍ପସମୟରେ ବହୁ ଦୂର ଯାଇହେବ ତା' ତ ସମ୍ଭବ ହେଲଣି ।

ତେଣୁ ବେଳ ତ ଏଥର ପ୍ରତ୍ୟେକଙ୍କୁ ବେଶୀ ମିଳିବାର କଥା, ଅଥଚ ସମୟ ନାହିଁ ବୋଲି ଦୁରି ପଡ଼ୁଛୁ କାହିଁକି ?

ଏହାର ମୁଖ୍ୟକାରଣ ମନୁଷ୍ୟର ସମୟ ତା'ର ଅଲକ୍ଷ୍ୟରେ କପରି ଚାଲିଯାଉଛି ତାହା ସେ ଜାଣିପାରୁନାହିଁ । ନିରର୍ଥକ କାମରେ, ଯେଉଁ କାମ ନକଲେ ନିଜର କି ଗୋଷ୍ଠୀର କୌଣସି ହାନି ହେବନାହିଁ ତଦ୍ରୂପ କାମରେ ତା'ର ବେଶୀ ସମୟ ଚାଲିଯାଉଛି । ବମ୍ବେ, ବିଲାତ, ଆମେରିକାଦି ବହୁଦୂର ବୁଲିବାକୁ ସମୟ ମିଳିପାରୁଛି, ଅଥଚ ପଡ଼ିଶାଘରର ଦୁଃଖ ବୁଝିବା ବେଳକୁ ସମୟ ନାହିଁ ; ନିଜ ଘରର ବାସ୍ତବ ବିଷୟ ବୁଝିବାକୁ ବେଳ ନାହିଁ, ଅଥଚ ସିନେମା ଦେଖା ବେଳକୁ ସମୟ ମିଳିପାରୁଛି ; ବିଜୁଳି ଆଲୁଅ ଓ ପଙ୍ଖାତଳେ ବସି ରେଡ଼ିଓର ସଙ୍ଗୀତ ଶୁଣିବାକୁ ସମୟ ମିଳିପାରୁଛି, ଅଥଚ ନିଜ ବାପା ଯଦି ବେମାର କିମ୍ବା ଘରେ ଅନ୍ୟ କୌଣସି ଜରୁରୀ କାମର ଆବଶ୍ୟକତା ରହୁଛି ସେଥିପାଇଁ ପ୍ରତିକାର କରିବାକୁ ବେଳ ନାହିଁ, ପଡ଼ିଶାଘରର କଥା ତ ଦୂର କଥା । ଯଶୋଦାପରି ମା'ଙ୍କର କହ୍ନେଇ ପ୍ରତି ସ୍ନେହ ପ୍ରଦର୍ଶନରେ ସମୟ ଯେ କପରି କଟି ଯାଏ ତା ସେ ଜାଣିପାରେ ନାହିଁ । ମାତ୍ର ବର୍ତ୍ତମାନ ଅବାଧଭ୍ରମଣ ଓ ସିନେମା ଇତ୍ୟାଦି ନିମିତ୍ତ ଅଡୁଆ ବୋଧହେଲେ ନିଜ କୋଳର ପୁଅକୁ ସ୍ତନ ଦେବାକୁ ବେଳ ନାହିଁ ଏବଂ ସେଥିପାଇଁ ଧାଈ ଆବଶ୍ୟକ ହେଉଛି । ମଣିଷ ମୋଟ୍‌ରେ ଅନ୍ଧ ପାଲଟି ଯାଉଛି ।

ଆରେ, ଆମେ ତ ଏ ହାତକୁ ଓ ଗୋଡ଼କୁ ଉଚିତ କାମ ଦେଲୁନାହିଁ; ପରିଶ୍ରମକୁ ଡରି ଘରେ ଗାଈ ନ ରଖି ଖାଣ୍ଟି ଦୁଧ ନ ପିଇ କାହିଁ ବିଲାତ ଓ ଆମେରିକାରୁ ଆମଦାନି ହେବାର ଅନିଶ୍ଚିତ ଦୁଧ ଓ କ୍ରିମ୍‌କୁ ଅମୃତ ମଣି ପିଇଲୁ ; ଆମର ତ ଗାଁର ତେଲ କୁଳ ଗଲେ, ଉବାଟିଣମାନଙ୍କର ଅନିଶ୍ଚିତ ମିଶ୍ରିତ ତେଲ ଓ ଘିଅ

ଅବାଧରେ ଚଳାଇଲୁଁ; ସାମାନ୍ୟ ପରିଶ୍ରମରେ ସୁଖାଦ୍ୟ ଯେତେ-
ବେଳେ ତିଆରି ହୋଇପାରନ୍ତା ସେତେବେଳେ ତା ନ କରି
ଅନ୍ୟର ପରିଶ୍ରମ ଉପରେ ନିର୍ଭର କରି ଯାହା ତା ଖାଇଲୁ ଏବଂ
ଯେତେବେଳେ ମନ ଖାଇଲୁ; ଆମର ତ ଖାଦ୍ୟ ଏବେ ଫାକ୍ଟରୀ
(factory) ରେ ତିଆରି ହେବାକୁ ବସିଲଣି; ଏତେ ଅପରିଷ୍କାରତା
ମଧ୍ୟରେ ଗଢିକଲୁ; ଆମର ପଇସା ସବୁ ସିନେମା, ବିଭିନ୍ନ ଯନ୍ତ୍ର
କିଣିବାରେ ଏବଂ ସୁସଭ୍ୟ ହେବାପାଇଁ ଅଯଥା ପ୍ରସାଧନ ସାମଗ୍ରୀ
ଏବଂ କାରଖାନାର କୃତ୍ରିମ ଖାଦ୍ୟ କିଣିବାରେ ବ୍ୟବସାୟୀ
କୁଳକୁ ଦେଇ ନିଜକୁ ଦରିଦ୍ରରୁ ଦରିଦ୍ରତର କଲୁ; ସେଥିରେ ପୁଣି
ଗୁହା, କଫି, ସିଗାରେଟ୍ ଓ ତମାଖୁ କୌଣସିଥିରେ ବାରଣ ରହିଲା
ନାହିଁ। ତେଣୁ ରୋଗ ନ ହେବ କାହିଁକି? ଆମେ ଅଧିକ ଦୁର୍ବଳ
ଶରୀର ନ ପାଇବା କାହିଁକି? ଆମର ଅବୟବ ସବୁ ଦୁର୍ବଳ
ହେଲେ; ଖରାକାକର ଓ ପବନ ଆମକୁ ବାଧିଲା; ଏ ଦେହ ଯେଉଁ
ମାଟିରୁ ଜନ୍ମ ନେଇଛି ଏବଂ ଯେଉଁ ମାଟିରେ ଦିନେ ମିଳେଇ ଯିବ
ସେହି ମାଟିର ଅମୃତକାରୀ ଗୁଣକୁ ଜାଣିବାକୁ ଚେଷ୍ଟା ନ କରି ଘୃଣା
କଲୁ, ଆମପାଇଁ ବିଭିନ୍ନ ବିଷାକ୍ତ ଔଷଧି ବରେଣ୍ୟ ହେଲା। ସେଥିରେ
ଆମର ରୋଗ ହେବ ନାହିଁ ତ ଆଉ ହେବ କାହାର? ଏବେ
ଅଳ୍ପ ଦିନରେ ବି ରୋଗ ହେଉଛି। ପିଲାର ଜନ୍ମ ହେବା ସଙ୍ଗେ ସଙ୍ଗେ
ଯେଉଁ ଭଗବାନ ତା ପାଇଁ ମାତୃସ୍ତନରେ କ୍ଷୀର ଖଞ୍ଜିଛନ୍ତି, ଯେ
କି ବିରାଡ଼ିର ଦେହ ଖରାପ ହେଲେ ଘାସ ଖାଇବାର ନିର୍ଦ୍ଦେଶ ଦେଇ
ଛନ୍ତି, ସେହି କରୁଣାମୟ ବିଭୁ ମନୁଷ୍ୟର ରୋଗର ନିଦାନ ସ୍ୱରୂପ
ସମସ୍ତ ଉପାୟ ତା ପାଖରେ ରଖିଛନ୍ତି। ବିଭିନ୍ନ ବନସ୍ପତି, ପବନ,
ସୂର୍ଯ୍ୟାଲୋକ, ମାଟି ଓ ପାଣି ଇତ୍ୟାଦି ତାର ଖୁବ୍ ନିକଟରେ—
ଏ ସବୁପାଇଁ ତାକୁ ପଇସା ଦେବାକୁ ପଡୁନାହିଁ, ଠିକ୍ ଯେପରି

ନେଉଳକୁ ତା'ର ବିଷହାରିଣୀ ଔଷଧି ଆଣିବାକୁ କଷ୍ଟ ପଡ଼େ ନାହିଁ। ସେ ସବୁ ତ ନଗଣ୍ୟ ବୋଲି ଜଣାପଡୁଛି। ଯେହେତୁ ଏ ଯୁଗରେ ସବୁ କାରବାର ଟଙ୍କା ପଇସାରେ। ଯେଉଁଥିରେ ପଇସା ଖର୍ଚ୍ଚ ହେଲା ନାହିଁ, ତହିଁରେ ମହତ୍ତ୍ୱ ନ ଥିବ କି ବିଜ୍ଞାନ ନ ଥିବ ବୋଲି ଆଗରୁ ଧରିନିଆଯାଉଛି। ଡାକ୍ତର କି ବୈଦ୍ୟଙ୍କ ପିଣ୍ଡ ଧରିଲେ କି ଦାମିକା ଔଷଧି କିଣି ବ୍ୟବହାର କଲେ, ତାହା ପକ୍ଷେ ବିଷ ହୋଇଥାଉ, ସେ ଔଷଧି, ଭାକ୍‌ସିନ୍ ଓ ସିରମ୍‌ର ବିଷକ୍ରିୟାରେ ପକ୍ଷେ ଆମ ଶରୀର ଗୋଟିଏ ବିଷ ମୁଣାରେ ପରିଣତ ହୋଇ ବିଭିନ୍ନ ଜଟିଳ ରୋଗକୁ ଆନୟନ କରୁ, ତଥାପି ତହିଁରେ ବିଜ୍ଞାନ ନିଶ୍ଚୟ ଥିବ ବୋଲି ଆମର ଧାରଣା ହୋଇଛି, ଯେହେତୁ ଆମର ତହିଁରେ ବହୁତ ଅର୍ଥବ୍ୟୟ ହେଉଛି ଏବଂ ସେଥିପାଇଁ ଅନୁଷ୍ଠାନ ଓ ଔଷଧ ଇତ୍ୟାଦି ତିଆରିରେ ଅଜସ୍ର ଧନ ବ୍ୟୟ କରାଯାଉଛି। ପୁଣି ଆମର ଯେ କେତେ ସମୟ ଡାକ୍ତରଙ୍କ ପାଖକୁ ଓ ଡାକ୍ତର ଖାନାକୁ ଦଉଡ଼ିବାରେ ଯାଉଛି ସେ ଆଡ଼କୁ ବି ନଜର ରହୁନାହିଁ।

ଏ ଯୁଗରେ ମଣିଷକୁ ଯେଉଁ ଅଯଥା ଭୟ, ଦୁଃଖ, ରୋଗ, ଶତ୍ରୁଭାବ, ବିଶ୍ୱାସଘାତକତା, ଅସମ୍ଭବ ସ୍ୱାର୍ଥପରତା, ଅନବରତ କଳହ, ପରସ୍ପର ପ୍ରତି ସନ୍ଦେହ ଏବଂ ବୃଥା ଭାବନା ଆଦି ଦୁଃଖ-ମାନ ଘୋଟି ଯାଇଛି, ସେ ସବୁରୁ ତେବେ ନିସ୍ତାର ମିଳିବ କିପରି?

ଏହାର ନିଦର୍ଶନସ୍ୱରୂପ କେତେକ ବିଶିଷ୍ଟ ବୈଜ୍ଞାନିକ ଏହି ତଥାକଥିତ ବିଜ୍ଞାନର ନିନ୍ଦୁକ ହେଲେଣି। କେତେକ ବିଶିଷ୍ଟ ଏଲୋ-ପାଥି ଡାକ୍ତର ଅର୍ଥଦଣ୍ଡ, ଜେଲ୍ ଏବଂ ନାନା ନିର୍ଯାତନା ସହି ସୁଦ୍ଧା ଉଚ୍ଚସ୍ୱରରେ ସେମାନଙ୍କର ପ୍ରଣାଳୀସବୁ ଅବୈଜ୍ଞାନିକ, ଅଯୌକ୍ତିକ ଓ ଅନିଷ୍ଟକର ବୋଲି ଖୁବ୍ ଜୋର ସହ ମତ ପ୍ରକାଶ କଲେଣି। ଏ ଟ୍ରାକ୍ଟର ଓ ବିଭିନ୍ନ ରାସାୟନିକ ଦ୍ରବ୍ୟ କୃଷିପାଇଁ କ୍ଷତିକାରକ

ଏବଂ ଜମିକୁ ଯେ ଦିନେ ଅନୁର୍ବର କରି ମରୁଭୂମି ପାଲଟାଇ ଦେବ, ସେ ବିଷୟରେ ପାଶ୍ଚାତ୍ୟ ଦେଶର ବିଭିନ୍ନ କୃଷିଗବେଷକ ମତ ଦେଲେଣି । ଏ ଯନ୍ତ୍ରଶିଳ୍ପ ଯେ ବେକାର ସମସ୍ୟାକୁ ଜଟିଳରୁ ଜଟିଳତର କରୁଛି, ଏବଂ ସମାଜରେ ବୈଷମ୍ୟ ଅଧିକରୁ ଅଧିକ କରୁଛି, ସେ ବିଷୟରେ ବିଶିଷ୍ଟ ଜନନାୟକମାନେ ଦୃଢମତ ଦେଲେଣି ।

ଆମର ଏ ବିଜୁଳିଖଞ୍ଜା ବିରାଟ ଅଟ୍ଟାଳିକା ଏବଂ ତା ସାଙ୍ଗକୁ ରୁଗ୍ଣ ଓ ଦୁର୍ବଳ ଲୋକର ଆବଶ୍ୟକତା ବା କ'ଣ ? ଏତେଗୁଡ଼ାଏ ଘର ! ମାତ୍ର ଘରଗୁଡ଼ାକ ମଶାଣିପରି ମାଡ଼ି ମାଡ଼ି ପଡ଼ୁଛି । ଘରକୁ ସିନା ସୁସ୍ଥ ମଣିଷ ସୁନ୍ଦର । ବିଭିନ୍ନ କଣ୍ଢେଇ ଓ ଚିତ୍ରରେ ସଜାଇଲେ କ'ଣ ମଣିଷ ନ ଥିବା ବିରାଟ ଘରେ ଭୂତଭୟ ହେବ ନାହିଁ ? ଆମର ବରଂ ପତ୍ରକୁଡ଼ିଆ ବରେଣ୍ୟ ଯେଉଁଠାରେ ଆବାଳବୃଦ୍ଧ-ବନିତାଙ୍କଠାରେ ଆନନ୍ଦର ଢେଉ ଖେଳୁଥିବ ; ପ୍ରତ୍ୟେକ ପରସ୍ପର-ପ୍ରତି ସହାନୁଭୂତିଶୀଳ ହେଉଥିବେ ; ସୁସ୍ଥ ପିଲାମାନଙ୍କର କୋଳାହଳରେ ସେ କୁଡ଼ିଆଟି ପୂରି ଉଠୁଥିବ ; କାମଧେନୁର ସେବା ଫଳରେ ଖାଣ୍ଟି ଦୁଧ ଯଥେଷ୍ଟ ମିଳୁଥିବ । ଏ ଡବା ଦୁଧର କି ପ୍ରୟୋଜନ ? ପାଣି, ପବନ, ସୂର୍ଯ୍ୟ, ମାଟି ଓ ବନସ୍ପତି ଇତ୍ୟାଦି ଯଦି ରୋଗ ଦୂର କରି ପାରୁଥିବ, ତେବେ ଏ ବ୍ୟୟସାପେକ୍ଷ ବିଷାକ୍ତ ଔଷଧରେ ଶରୀର ବିଷାକ୍ତ କରିବା କି ପ୍ରୟୋଜନ ? ଏପରି ଭାବରେ ପରସ୍ପର ମିଳିମିଶି ଆନନ୍ଦରେ ସୁସ୍ଥ ମାନବ ଗଢ଼ି ଉଠିବେ ବରଂ ସେହି ପତ୍ରକୁଡ଼ିଆରେ, ପ୍ରକୃତି ମା'ର ଶୋଭାମୟୀ କୋଳରେ, କିନ୍ତୁ ଏ ବାହ୍ୟାଡ଼ମ୍ବରପୂର୍ଣ୍ଣ, ଶୁଷ୍କ, ନୀରସ, ନିର୍ମମ, ଆତ୍ମଜ୍ଞାନରହିତ ଓ ଜଡ଼ ବିଜ୍ଞାନଦ୍ୱାରା ଏତାଦୃଶ ଆନନ୍ଦମୟ ଜୀବନ ଯେ ସମ୍ପୂର୍ଣ୍ଣ ଅସମ୍ଭବ, ଏହା ନିଶ୍ଚିତ ।

—*—

# ଗାଁକନିଆଁ ସିଂଘାଣୀନାକୀ

ଅଜା—"ଆରେ ପିଲେ, ମେଳନ ତ ଏବେ ଦେଖା ସରିଲା, ପେଟ୍ଟୂଟିଏ ଲେଖେଁ ଠୁଁକଲଣି ଯେ ଅଜା ଖାଇଲେ କ ନାହିଁ ବୁଝିଲନି, ଏଥର ଆଈଙ୍କୁ କହ, ଚାଲ ଘରକୁ ଫେରିବା । କଲେ କୁନି, ତୁ ଏଡ଼େ ମୁହଁ କଆଁ କରିଛୁ ? ତୋତେ କ'ଣ ବାବୁଭାଇନା ମାଇଲା କଲେ ?"

ଆଈ ସଙ୍ଗେ ସଙ୍ଗେ ଉଠି ପଡ଼ି କହିଲେ, "ମଲା, ପିଲାଙ୍କ ସାଙ୍ଗରେ ଟିକିଏ ନ ଲାଗିଲେ ତମର ଭାତ ହଜମ ହୁଏନି ; କାହିଁକି, ତମର କେଉଁଠା ଝା ଉଣା ହୋଇଗଲା ଯେ ପିଲାଙ୍କ ଖିଆ କଥା ଭଣିଗଲା ? କୁନିକୁ କ'ଣ ପଚାରୁଛ, ସତେ କିଛି ନ ଜାଣିଲା ପରି ? ପିଲେ ତ ଘରୁ ଗୋଡ଼ କାଢ଼ିଲାବେଳୁ ଲଗାଇଛନ୍ତି କୁଣ୍ଢେଇ କିଣିବେ ବୋଲି, ତାଙ୍କର କ'ଣ ଖାଲି ଖାଇବାରେ ମନ ? ବୁଢ଼ାଟିଏ ହେଲଣି, କେବେ ଆଉ ପିଲାଙ୍କ ମନ କଥା ବୁଝିବ ? ଆଉ ଯିବାକୁ ତର ଲଗାଇଛ କମିତି ?"

ଅଜା—"ଆଚ୍ଛା, କହିଲ ପିଲେ, କାହାର କ'ଣ ଲୋଡ଼ା ?"

କୁନି—"ମୋର ବେଲୁନ୍, ଚଷମା, ଆଉ ସେ ନାଲି ପଁ-ପଁରୁ ଗୋଟେ ।"

ବାବୁ—"ଏଁ, ମୋର ଯୋଡ଼େ ବେଲୁନ୍, ଚଷମା ଆଉ ସେ ନାଲି ପଁ-ପଁ ରୁ ଯୋଡ଼େ ।"

ରେବତୀ—"ମୋର ନାଇଲନ୍ ରିବନ୍ ଆଉ ସେ ପ୍ଲାଷ୍ଟିକ୍‌ର ଫୁଲ ଗୁଙ୍ଗୁଡ଼ି, ଆଉ ସେ ଗୁଲିବନ୍ଧା ମଠର ।"

କୁନ, ବାବୁ ଏକାବେଳକେ କହିଲେ—"ଆମର ବେଲୁନ୍, ଚଷମା, ସେ ନାଲି ପେଁ-ପେଁ ; ଆଉ ରେବତୀ ନାନୀର ଯାହା ଆସିବ ଆମର ତାହା ବି ଆସିବ । ନଇଲେ ଜାଣିଥ, ଆମେ ତମକୁ ଏଠୁ ଛାଡ଼ିବୁ ନାହିଁ । ହେଇଟି, ଭୁମର ବଙ୍କୁଲି ବାଡ଼ିକୁ ଲୁଚାଇଦେବୁଟି !"

ପିଲାଙ୍କର ଏ ଅଟୁଣ୍ଡା ଅଳିରେ ଅଜାଙ୍କର ଅକଲ ଗୁଡ଼ୁମ୍ !

ଆଈ—( ଅଜାଙ୍କ ପ୍ରତି ) "ତମକୁ ଖାଲି କଳି ଲଗାଇ ଆସେ । ପିଲେ ତ କହୁଛନ୍ତି ; ସତେ ତ ଗଠାପରସ୍ତୁ କୁଣ୍ଢେଇ ମନ-ଭୁଲାଣିଆ ହୋଇଛ, ପୁଣି ପଢ଼ିଲେ ତ ଭାଙ୍ଗିବ ନାହିଁ । ଯାଉନ, କେତେ କୁନ୍ଥେଇ ମନ୍ଥେଇ ହେଉଛ ? ପିଲାଗୁଡ଼ିକ ମୁହଁ ଶୁଖାଉଛନ୍ତି । ତେମେ ନ ଗଲେ ମୁଁ ଏବେ ଯାଉଛି । ଆସରେ ପିଲେ !"

ଅଜା—(ଆଈଙ୍କ ପ୍ରତି) "ହଇଲୋ ହୁଣ୍ଡି, ରହିଁଲୁ ସିଆଡ଼କୁ, ଆମ ଗାଁ ନୋଳପାଣ୍ଡ, ଢଶିଲାଟି-ଇ ? କେତେ କିସମର ମାଟି କୁଣ୍ଢାଇ ଆଣିଛି-ଇ , ସେ ପାଟପୁରର କୁନ ମହାରଣାକୁ ବାଟରେ ଦେଖିଲୁ ପରା-ଆ ? କାଠରେ କେତେ ପ୍ରକାର କୁଣ୍ଢାଇ କରୁଛି-ଇ ! ଆଉ ତୁଳସୀଦେଦାର ଟଣାଆ ସାହୁକୁ ଚିହ୍ନୁଛୁଟି ? ହେଇଟି, ଏଠି ବୁଲୁଥିଲା ; କାଗଜ ସୋଲରେ କେତେରକମର ଫୁଲ ଚଢ଼େଇ କରୁଛି, ଆଉ ବାଉଁଶ ଖାଡ଼ିର କେତେ ପେଁଟହେକାଲୀ କରି ଆଣିଛି ! ତାଙ୍କର କଣ ସେଗୁଡ଼ାକ ତେବେ ବିକ୍ରୀ ହେବନି କହୁଛୁ ? ସେମାନଙ୍କ ଘରେ ପିଲେ ସିମିତି ଭୋକଉପାସରେ ମରି ଗଡ଼ୁଥିବେ ? କାହାର ପିଲେ ଶୀତ କାକରରେ ଥରୁଛନ୍ତି, ଘୋଡ଼େଇ ହେବାକୁ କନ୍ଥା ସମ୍ବଳ ନାହିଁ, କଣ ଲୁଗା କି ଗୁଦର ନେବ ; କାହାର ଢଡଆଣୀ ପିଲା ତଳେ ଗଡ଼ୁଛି, ତା'ପାଇଁ ଚଟି କି ମସିଣା ନେବ ଏବଂ କାହାର ବାସି ଚୂଳିକୁ ଦାନା ନାହିଁ, ଚାଉଳ କିଣିବ । କଳ ଆସିଲା

ଯେ, ଏମାନଙ୍କଠାରୁ କାମ ଆପଣା ଛୁଏଁ ଚାଲିଗଲା । ଏମାନଙ୍କର ନା ଜମି ଅଛି ନା ଅନ୍ୟ ଧନ୍ଦା ଅଛି । ଚଳିବେ କିମିତି, କହିଲୁ ?"

ଆଈ—"କାହିଁକି, କିଏ ମନା କଲା କି ? ସେମାନେ ବିକୁ ନାହାନ୍ତି ? ଯେଉଁ ସୁନ୍ଦର ତ ହେଉଛି, ମନ ଲୋଭେଇ ପଡ଼ୁଛି !"

ଅଜା—(ଆଈକି ବିରକ୍ତ ହୋଇ )"ହଁ, ଗାଁ-କଣିଆଁ ନା, ସିଂଘାଣୀନାକୀ ଦିଶୁଛି । ତୋତେ କହି କରି ଲାଭ ନାହିଁ । ହେଇଟି ମୁଁ ପିଲାଙ୍କୁ ବୁଝେଇ ଦେଉଛି । ପିଲାଙ୍କୁ ଖରାପ କରୁଛି ତୁମର ମାଇପି ଜାତିଟା, ଆଉ ତୁମ ଅକଲି ବୁଝାମଣା ।"

ଆଈ—"ହ—ଅ ! ଯା ଦୁନିଆକୁ ସୁନ୍ଦର, ତା ପିଲାଙ୍କୁ ବି ସୁନ୍ଦର ।"

ଅଜା—"ଆଲୋ ବୁଢ଼ି, ପିଲାଙ୍କ ମନକଥା ତୁ କଣ ଜାଣିଛୁ ? ବାଲି କାଦୁଅ ପଙ୍କ କଣ ଦୁନିଆକୁ ସୁନ୍ଦର ? ପିଲାଙ୍କ ମନ କ'ଣରେ ବୁଝେ, କିଏ ଜାଣେ ? କାଦୁଅପଙ୍କ ପାଣିରେ ଲଟର ପଟର ହେବାକୁ କିପରି ସୁଖ ମଣନ୍ତି ତୁ କଣ ଦେଖିନୁ ? କେତେବେଳେ ସାମାନ୍ୟ ଛିଡ଼ା କାଗଜଟାପାଇଁ ଦୁଇଜଣଙ୍କ ଭିତରେ ଭୀମଦୁର୍ଯ୍ୟୋଧନ ଲଢ଼େଇ ଲାଗେ, କଣ ଦେଖିନାହୁଁ ? କିନ୍ତୁ ତାଙ୍କୁ ବୁଝାଇଦେଲେ ଅଳ୍ପକେ ବୁଝିଯାନ୍ତି ।"

(ପିଲାଙ୍କ ଆଡ଼କୁ) "ଆରେ ପିଲେ, ମୋ କଥା ଶୁଣି ସାର କି, ତା'ପରେ କୁଣ୍ଢାଇ କଣିବ ।"

ପିଲେ—"କ'ଣ କୁହ ।"

ଅଜା—"ଆମ ଗାଁର ନୋଳିପାଣକୁ ଚିହ୍ନିଛ ?"

ପିଲେ—"ହଁ, ଆମେ ଜାଣିଛୁ । ତା ପୁଅ ଜଗା, ଝିଅ ମୋଖି, ଚିରା ନେକଡ଼ା ପିନ୍ଧି ଆମ ଘରକୁ କେତେଥର ଆସିଛନ୍ତି ଚାଉଳ ଆଉ ଭାତ ମାଗି ।"

ଅଜା—"ରେବତି, ତୋର ମନେ ଅଛି ନା, ସେଦିନ ରାତିରେ ଭାରି ବର୍ଷା ପବନ ହେଲା, ଆମ ଦାଣ୍ଡ ଦୁଆର ମୁହଁ ନଡ଼ିଆଗଛଟା ଭୁସ୍‌କରି ଭାଙ୍ଗି ପଡ଼ିଲା । କି ବତାସି ପବନ ! ଆମେ ସବୁ କମିତି ଦୁଆର କିଳି ଘରେ ବସିଲୁ !"

ବାବୁ—"ଅଜା, ହଁ ମୋର ମନେ ଅଛି । ରେବତି ନାନୀ, ମୁଁ ଆଉ କୁନି ଘୋଡ଼ଘାଡ଼ ହୋଇ ଆଈ ପାଖରେ ଶୋଇ ପଡ଼ିଲୁ । ଆଈ ଆମକୁ ବୁଢ଼ୀ ଅସୁରୁଣୀ ଗପ କହୁଥାଏ । ବୋଉ ଆମ ମନ ବୁଝି ଆମ ପାଇଁ ଗରମ ଗରମ ପିଠା ଆଉ ଖିରି କରିଥିଲା ।"

କୁନି—"ଅଜା, ଇମିତି ସବୁଦିନ ବର୍ଷାଝଡ଼ ହୁଅନ୍ତା କି, ଆମ ପିଁ ପିଠା ଖିରି ଏମିତି ମିଳନ୍ତା । ଘୋଡ଼ଘାଡ଼ ହୋଇ ଏମିତି ମଉଜ ମାରନ୍ତୁ । ବର୍ଷାଝଡ଼ ହେଲେ ବଡ଼ ମଉଜ, ନାଇଁ ରେ ବାବୁ, ନାଇଁ ଲୋ ରେବତି ନାନି !"

ଅଜା—"ହଁ, ଭାରି ମଜାକଥା ; କିନ୍ତୁ ଜାଣିଛୁ ରେବତି, ସେଦିନ ନୋଳିପାଣ କଥା ? ଘର ବୋଲି ବଖରେ, ପୁଣି ଗୁଳରେ ସହସ୍ର କଣା; ସେଦିନ ରାତିରେ ସେ ପିଲାଦୁଇଟିଙ୍କୁ ନେଇ କଣ କରୁଥିବ କହିଲ, ପିଲେ !"

ପିଲେ—(ବ୍ୟଗ୍ର ଭାବରେ) "କ'ଣ କହିଲ ଅଜା ?"

ଅଜା—"ସେ କୁଣ୍ଢେଇ ତିଆରି କରେ, ତା'କୁ ବଙ୍କ ଚଳେ । ତା କୁଣ୍ଢେଇକୁ କେହି କଣିଲେ ନାହିଁ, ଏ ଗଟାପାରଚ୍ଛ କୁଣ୍ଢେଇ ଓ ବେଲୁନ୍ ଦାଉରେ । ଭଲ କାରିଗରଟେ, ହେଲେ କ'ଣ ହବ ? ଆଜି ଗଟାପାରଚ୍ଛ, ବେଲୁନ ଓ ପ୍ଲାଷ୍ଟିକ୍ ଯୁଗରେ ତା କୁଣ୍ଢେଇକୁ ପଚାରୁଛି କିଏ ? ଗୁରୁଦିନ ହେଲା ତା'ଘରେ ରୋଷେଇ ବନ୍ଦ ଥିଲା । କୌଣସିମତେ 'ତୋକେ ପିଇ ଦଣ୍ଡେ ଝା' ନ୍ୟାୟରେ ଗଣ୍ଡେ ମୁଢ଼ି କିଣି ତହିଁରୁ ମୁଠେ, ଆଉ ପାଣିରୁ ମନ୍ଦେ—ଏମିତି କରି ତା ପୁଅ

ଜଗା ଓ ଝିଅ ମୋକ୍ଷକୁ ଦେଇଥାନ୍ତି । ତୋଳପାନ ଆଉ ଜଗା-ବୋଉ—ଏ ଦୁହେଁ ସ୍ୱରନ୍ଧନ ହେବ ଖାଡ଼ା ଖାଡ଼ା ଉପାସ, ଘରେ ଚଗଲ୍ଲଗା ଖଣ୍ଡେ ବ ନାହିଁ । ସବୁ ତ କଳର ଦାଉରେ ତାଙ୍କ ଘରୁ ସର ଚପୁଡ଼ିଲ ପର ଯାଇଛି । ସେଦିନ ରାତିରେ ତାଙ୍କ ଘର ଭିତରଟାଯାକ ବର୍ଷାପବନ ଏତେ ଯେ କହିଲେ ନ ସରେ । 'ହେ ଭଗବାନ, ମୋ ଜଗା ଓ ମୋକ୍ଷକୁ ରଖ' ବୋଲି ରଡ଼ି ଗୁଡ଼ି ଘରର ଗୋଟେ କଣରେ ରାତିଟାଯାକ ଜଗା ଓ ମୋକ୍ଷକୁ ଜାକଟି ମାକଟି କରି ଧରି ବସିଥାନ୍ତି ; ଠିକ୍ ଏତିକବେଳେ ଭୁମର ଖଟ-ଉପରେ ଘୋଡ଼ଘାଡ଼ ହୋଇ ଖିରି ପିଠା ଖିଆ ଚାଲିଥାଏ, ଆଉ ସୁଖ ଏତେ ଟାଣିଲ ଯେ ଭୁମକୁ ସ୍ୱର୍ଗ ଆଉ ଢ ଆଙ୍ଗୁଳି ମାତ୍ର । ଘରେ ପାଣି ଜମିଲରୁ ବାପ ମା ଦୁହେଁ ପୁଅଝିଅଙ୍କୁ ଜାକି କାନ୍ଥକୁ ଲାଗି ମୁର୍ଦ୍ଧାର ପରି ଠିଆ ହେଲେ । ଜଗା ଆଉ ମୋକ୍ଷ ଶୀତରେ ବରଡ଼ାପତ୍ର ପରି ଥରୁଥାନ୍ତି ; ଘରେ ଝଣ୍ଡିଏ ହେଲେ ଘୋଡ଼େଇ ହେବାକୁ ନ ଥାଏ । ମୋକ୍ଷ ତ ସାନ ପିଲାଟେ, ତାକୁ ଶୀତକଷ୍ଟରୁ ଭୋକକଷ୍ଟ ବେଶୀ ବାଧିଲାଣି ; ସେ ଏତିକବେଳେ କହିଦେଲା—'ବୋଉ, ମତେ ଭାରି ଭୋକ ।' ବାପ ମା ଆଉ ସମ୍ଭାଳି ପାରିଲେ ନାହିଁ, ଦିହିଁଙ୍କ ଆଖିରୁ ଲୁହ ଧାର ବହି ପୁଅ ଝିଅଙ୍କ ଉପରେ ଟପ୍ ଟପ୍ ହୋଇ ପଡ଼ିଲା । ଜଗା ଉପରକୁ ଚାହିଁ କାନ୍ଦ କାନ୍ଦ କହିଲା, 'ବୋଉ, ତୁ କାନ୍ଦୁଛୁ ?'

ଏତକ ଶୁଣୁ ଶୁଣୁ ବାବୁ ଓ ରେବତୀ ଆଉ ସମ୍ଭାଳି ନ ପାରି କାନ୍ଦ ପକାଇଲେ । କହିଲେ, "ଅଜା, ଆମକୁ ତମେ କହିଲ ନି, ଆମେ ଆମର ପିଠାରୁ ତାଙ୍କୁ ଦେଇଥାନ୍ତୁ, ଆମର ପିନ୍ଧା ପେଣ୍ଟକୁ ଦେଇଥାନ୍ତୁ ।"

ଅଜା—"ଆରେ ନାଇ ମ, ତୁମକୁ ତା କଣ କିଏ ମାଗୁଛି ? ତୁମେ ଦିନେ ଦେଲେ କଣ ତାଙ୍କର ଚଳ ଛପର ହୋଇଯିବ ନା ଦୁଃଖ ଚାଲିଯିବ ! ତୁମକୁ ଯାହା ମାଗିବେ ତୁମେ କଣ ଦେଇ-ପାରିବ ?"

ପିଲେ—"ହଁ, ଆମେ ନିଶ୍ଚୟ ଦେବୁ, କ'ଣ କହ ।"

ଅଜା—"ହେଇଟି ; ତା'ର ମାଟି କୁଣ୍ଢେଇ ଦିଶୁଛି ଟି ? ଜଗା କହୁଛି, 'ବାପା, ହାଟରୁ ମୋପେଇଁ ଅଙ୍ଗ ପେଣ୍ଟ ଆଣିବ ।' ଜଗା ବୋଉ କହୁଛି, 'ମୋଖିକୁ ଜର ହୋଇଥିଲା, ଚାରିଦିନ ହେଲା ଭାତ ଖାଇନାହିଁ, ତା'ପାଇଁ ଗୁଡ଼ିଲ ମେଳନରୁ ଆଣିଲେ ରାନ୍ଧିବି, ମୋଖି ପଥି ଖାଇବ ।' ଜଗାବୋଉ ଜଗା-ବାପ ବାଟକୁ ତେଣେ ଚାହିଁ ବସିଥିବ, ତୁମେ ଗଟାପଲ୍ଟ କୁଣ୍ଢେଇ ବେଲୁନ୍ ଆଉ, କଲମଟର ଯାହା କିଣିବ ବୋଲି କହୁଛ, ସେ ସବୁରେ ପଇସା ଚାଲିଯିବ କାହା ପାଖକୁ, ଜାଣିଛ ?"

ରେବତୀ—"କାହା ପାଖକୁ, ଅଜା ?"

ଅଜା—"ଯିଏ ହଜାର ହଜାର କମଉଛି , ସେ ଟଙ୍କାକୁ ପାଇ ନୂଆ ନୂଆ ମଟର, ମଦ, ନାନାପ୍ରକାର ବ୍ୟସନରେ ବ୍ୟୟ କରି ଉଡ଼ାଇ ଦେବ ।"

ପିଲେ—"ଆମେ କାହିଁକି ତାକୁ ପଇସା ଦେବୁ କି !"

ଅଜା—"ହେଇଟି, ଯଦି ତୁମେ ଯ୍ବାର ମାଟି କୁଣ୍ଢେଇ, ତା'ର କାଠ କୁଣ୍ଢେଇ, ହେଇଟି ଯିଏ ବୁଲୁଛି, ତା'ର ସୋଲ କାଗଜର କୁଣ୍ଢେଇ ଆଉ ବାଉଁଶ ଖାଡ଼ର ପେଁହେକାଲୀ କିଣିବ ତେବେ ଜଗା ମୋଖିପରି କେତେ ପିଲା ଭୋକ ଉପାସ ବେଳେ ଗଣ୍ଡେ ଗଣ୍ଡେ ଖାଇବାକୁ ପାଇବେ, ଶୀତକାକରରେ ଥରିବା ବେଳେ ଖଣ୍ଡେ ଖଣ୍ଡେ ପିନ୍ଧିବାକୁ ପାଇବେ ।"

ଏତକ ଶୁଣୁ ଶୁଣୁ ରେବଣ୍ଟର ଆଖିରୁ ଦ ଧାର ଲୁହ ଗଡ଼ିପଡ଼ିଲା । ତାକୁ ଜଣା ପଡ଼ିଲା, ସତେ ଯେପରି ନୋଳା ପାନ୍ଦର କଣ୍ଢେଇ ଗଦା ଭିତରୁ ଜଗା, ଆଉ ମୋଣ୍ଟ ଶୁଖିଲା ମୁହଁଟିମାନ କାଢ଼ି 'ତାଙ୍କୁ ଠାର କହୁଛନ୍ତି, "ରେବଣ୍ଟ ସାଆଁ ତାଣି, ଲୁନା ସାଆଁ ତ, ବାବୁ ସାଆଁ ତ, ଆସ ମ, ଏ କୁଣ୍ଢେଇ ନିଅ । ଆମେ କ'ଣ ତମପର ପିଲା ନୋହୁଁ ? ଆମେ ଖାଇଲେ, ପିନ୍ଧିଲେ, ତୁମକୁ କ'ଣ ସୁଖ ଲାଗିବ ନାହିଁ ?"

ପିଲେ—"ଅଜା, ଆମେ ଆଜଠାରୁ ଏ ଗଟାପାର୍‌ଚା କୁଣ୍ଢେଇ, ଆଉ ବେଲୁନ୍ କିଣିବୁ ନା । ଆମକୁ ଏ ମାଟି, କାଠ ଓ ସୋଲ କୁଣ୍ଢେଇ ଆଉ ବାଉଁଶ ପେଁହେକାଳୀ ବଡ଼ ସୁନ୍ଦର ଦିଶୁଛି ।"

—*—

# ସିନେମାରୁ ଶିକ୍ଷା

( ସିନେମା ଦୁଆର ମୁହଁରେ ଭରି ଭିଡ଼ ଟିକଟ ନେବା ପାଇଁ ; ଲୋକ ଉପରେ ଲୋକ, ଠେଲା ପେଲା ଚାଲିଛି ଏକ ଲକ୍ଷ୍ୟରେ, କିଏ ଆଗ ଟିକଟ ନେବ, ସିନେମାଘର ଭିତରେ ପ୍ରବେଶ କରିବ । କାହାର ଗୋଡ଼ ଆଉ ଜଣେ ଚକଟି ପକାଉଛି, କିଏ କାହାକୁ କହୁଣୀରେ, ମୁଥାରେ ବା ବାହାରେ ଠେଲି ପକାଉଛି—କମିତି ଭିତରେ ପଶି ସଅଳ ଟିକଟ ଦ୍ୱାର ମୁହଁରେ ପହଞ୍ଚିବ ; ଏତିକିବେଳେ ସିନେମା ଆରମ୍ଭ ହେବାର ପ୍ରଥମ

ସଙ୍କେତ ଘଣ୍ଟି ବାଜି ଉଠିଲା ; ସିନେମା-ଟିକଟପ୍ରାର୍ଥୀଙ୍କର ଉଦ୍‌ବେଗ ଅଧିକ ବୃଦ୍ଧି ପାଇଲା ; କେହି କେହି ଲୋକଙ୍କର ଉପରେ ଚଢ଼ି ସିଧାସଳଖ ଟିକଟ ଦ୍ୱାର ଭିତରେ ହାତ ପୂରାଇବାକୁ ଉଦ୍ୟତ ଇତ୍ୟାଦି ଇତ୍ୟାଦି···ମଝିରେ ମଝିରେ ଜଣେ ଜଣେ ଟିକଟ କରି ଯାଉଛନ୍ତି ସିନେମା ଘରକୁ ।

ମଝିରେ "ଚନା ଚୁର୍‌ମୁର୍‌", "ବାରମଜା ଖାଇଲେ ଲାଗିବ ମଜା", "ବାଦାମ ସୋଲା ମଟର", "ଭୁବୁନାଦାନା କିଏ ଖାଇବରେ ଏଣିକି ଅନା", "ସଂସାର ସିନେମା ବହି" ଏପରି ପାଟି ଚାଲିଛି । )

ଟିକଟପ୍ରାର୍ଥୀଙ୍କ ଭିତରୁ

୧ମ ବ୍ୟକ୍ତି—( ବିରକ୍ତିଭାବ ପ୍ରକାଶ କରି )"ଲୋକ ଦିଶୁନି କିରେ, ମଣିଷ ଭଲ ହେଉନୁ ? ( ନିଜେ ହାତରେ ଠେଲି ଦେଇ ) ଇମିତି ଠେଲା ପେଲା ହେଉଛ କାହିଁକି ମ ?"

୨ୟ—(ଟିକଟ ଦୁଆର ନିକଟରେ ଥାଇ) "ସଅଳ ଟିକଟ ଦେଉନ, ଆମେ ଏମିତି କ'ଣ ଛିଡ଼ା ହୋଇଥିବୁ, କେତେବେଳୁ ଛିଡ଼ା ହେଲୁଣି, ଗୋଡ଼ ବଥେଇଲାଣି ଯେ !"

୩ୟ—(ସମସ୍ତଙ୍କ ପଛରେ ଥାଇ ଏବଂ ଅନ୍ୟମାନଙ୍କୁ ଠେଲି ଭିତରେ ପଶିବାକୁ ଉଦ୍ୟତ ହୋଇ) "ଆରେ, ମୁଁ ଚାରିଦିନ ହେବ ଆସି ଏ ଭିଡ଼ ଦେଖି ଫେରି ଯାଉଛି, ଏ ତ ଆହୁରି ଅନେକ ଦିନ ଚାଲିବ । ତୁମେ ସବୁ ଏତେ ଉଛନ୍ନ କାହିଁକି ? କାଲି ଗଲେ ହବନି ? ଏତେ ଠେଲାପେଲା କାହିଁକି ? ମୋତେ ଛାଡ଼ିଦିଅ, ମୁଁ ଯାଏ ।

୪ର୍ଥ—"ଆରେ, ଇମିତି ବକଲିଆ କାହିଁକି ହଉଛ, ସତେ ଯେମିତି ସରି ଯାଉଛି-ଇ । ଖାସା ଏ ସିନେମା ଆସିଲା, ଲୋକଙ୍କୁ କାପ୍ସା କରି ପକାଇଲା !"

୫ମ—( ଟିକଟ୍ ଧରିଛି ଆଣି ଭିଡ଼ ଭିତରୁ ବହୁ କଷ୍ଟରେ ଠେଲାପେଲା କରି ବହୁ ଶ୍ରମ ସହକାରେ ବାହାରକୁ ଆସିବା ବେଳେ) "ଆରେ ବାଆ ପ୍ରେ,ମଣିଷ ସତେ ମରିଯିବ ଏ ଭିଡ଼ରେ, ସିନେମା ନ ଦେଖିବ ପଛେ—ଏତକ ଭିଡ଼ ! ଆଉ ଟିକଏ ହେଲେ ତ ମରିଯାଇଥାନ୍ତି ! ବେକ ମୋର ତ ଚପି ହୋଇ ଯାଇଥାନ୍ତା ! ହଉ, ଏତେ କଷ୍ଟ ସିନା ପାଇଲି, ଏବେ ଟିକଟ ତ ମିଳୁଛି ; ଆସରେ ଗୋବିନ୍ଦ, ମଧୁ, ଗୋପାଳ, ଆସ, ତେଣେ ସିନେମା ଆରମ୍ଭ ହୋଇଯିବ ଯେ ।"

(ଏହା କହୁ କହୁ ଗୋବିନ୍ଦ, ମଧୁ ଓ ଗୋପାଳ ତିନି ଜଣ ବ୍ୟକ୍ତି ୫ମ ବ୍ୟକ୍ତିସହ ତୁରନ୍ତ ଚାଲିଗଲେ ସିନେମା ଦେଖିବା ଉଦ୍ଦେଶ୍ୟରେ । )

୪ର୍ଥ—( ବଡ଼ ବ୍ୟସ୍ତ ହୋଇ ଓ ପକେଟରେ ହାତ ମାରି ) "ଆରେ, ମୋ ମନିବ୍ୟାଗ୍ କିଏ ନେଇଗଲା ରେ – ଚୋର—ଚୋର —ଚୋର—ହାୟାନ୍ତି, କେତେ କଷ୍ଟରେ ବାପାଙ୍କ ବାକ୍ସରୁ ଲୁଚାଇ ପଇସା ସଞ୍ଚି ରଖିଥିଲି ଯେ, ସେତକ ସବୁ ଏବେ ଚୋର ନେଲା । ଏବେ କରେ କ'ଣ ?"

୩ୟ—"ଏ ଭିଡ଼ରେ କିଏ ନେଲା କମିତି କିଏ କହିବ ? ଜାଣୁଛ ତ ଏ ଚୋରଙ୍କ ଜାଗା, ହୁସିଆର ହେଲ ନାହିଁ ?"

୪ର୍ଥ—"ଏବେ କ'ଣ କରିବ ? ଏ ମନିବ୍ୟାଗ୍ ଗଲା ଯେତେ ଦୁଃଖ ନାହିଁ, ସଂସାର ସିନେମା ଦେଖିପାରିବନି, ଏହି ଚିନ୍ତା ହିଁ ବଡ଼ ଦୁଃଖ ଦେଉଛି; ହେ ଭାଇ, ମୋତେ କିଛି ପଇସା ଧାର ଦିଅ, ସବୁତଳ କ୍ଲାସରେ ବସିବି ପଛେ । ମୋଟେ ପାଞ୍ଚଅଣା ହେଲେ ଚଳିଯିବ । ଦିଅ, ହେଇଟି ବେଳ ହୋଇଗଲା । ତୁମକୁ ମୁଁ କାଲି

ବାପା କଟେଜ୍ ଯାଇଥିବା ବେଳେ ପଇସା ଆଣି ଦେଇ ଦେବନି —ଇ ? ମୋ ଆଣିବା କଥା ଘରେ କଏ କାହାଁକି ଜାଣିବ କି ?"

୩ୟ—"ଆରେ, ମୋଠି ପଇସା ଆସିଲା କୁଆଡ଼ୁ ? ସ୍ପଆର ଚନ୍ଦ ଆସିବ ବୋଲି ମୁଁ ବହୁ ଦିନରୁ ପଇସା ସଞ୍ଚି ରଖିଥିଲି । ଏତକ ପୁଣି ମୋ ଘରେ କେହି ଜାଣନ୍ତିନି । ମୁଁ ସିନେମା ଦେଖି ଆସିଛି ବୋଲି କ'ଣ ଘରେ କଏ ଜାଣନ୍ତି ? ଯାଇଛି ନା ଯାଇଛି ବୁଲି । ସ୍ପା ଜାଣିବେ ନା—ଆ !"

୪ର୍ଥ—"ଆସିଛୁ ଯେତେବେଳେ ସଂସାର ଦେଖି, ଫେରଯିବ ନ ଦେଖି ? ନ ହେଲେ ଦେଖିବା, ମୋ ଠୁଁ ଯେମିତି ଉପାୟରେ ମନିବ୍ୟାଗ୍, ଗଲା ଠିକ୍ ସେଇ ନ୍ୟାୟ କରବ । ସେଥିରେ ନ ପାରଲେ ଏ ନୂଆ କୁରୁତା ଖଣ୍ଡିକ ତ ଅଛି ( ନିଜ କୁରୁତାକୁ ଲକ୍ଷ୍ୟ କରି ) । ଏବେ ୮ଟଙ୍କା ଦେଇ ତିଆର ହୋଇଥିଲା । ବିକିଦେଲେ ଅନ୍ତତଃ ୨।୩ ଟଙ୍କା ହେବନି କି ! ଏଥରକୁ ମିଶାଇ ପୁଣି କେତେ ଥର ତ ସିନେମା ଦେଖା ହୋଇଯିବ । ଘରେ କହିଲେ, କହିବ—ଦିନ ଗରମ ହେଲା—କୁରୁତା କାଢ଼ି ପାର୍କରେ ବସିଥିଲି—କମ୍ୟୁନିଟି ଟାଉନ୍ ହଲ୍‌ରେ ବସି ପତ୍ରିକା ପଢ଼ୁଥିଲି—ଗୋଟାଏ ବିଷୟରେ ଧ୍ୟାନ ଥିଲା-ବେଳେ କେହି ଦୁର୍ବୃତ୍ତ କୁରୁତା ନେଇ ପଳାଇଛି । ଯେତେ ଖୋଜିଲେ ବି ମିଳିଲାନି । ବାପା ପୁଣି କରି ଦେବେନି କି ?"

(ଏତିକିବେଳେ ୪ର୍ଥ ବ୍ୟକ୍ତିର ବାପା ଚନ୍ଦ୍ରଧର ବାବୁ ବାହାରୁ ପୁଅକୁ ସେ ଗହଳି ଭିତରେ ଦେଖି ଡାକ ପକାଇଲେ )

୪ର୍ଥର ବାପା—"କିରେ ଜଗୁ !"

( ଏତକ ଶୁଣିବା ପରେ ୪ର୍ଥ ବ୍ୟକ୍ତି ତୁରନ୍ତ ପଳାଇଲେ)

୪ର୍ଥର ବାପା—"ଆଉ ହବନି , ସିନେମା ପିଲାଙ୍କୁ ମନ୍ଦ ବାଟକୁ ନେଉଛି ବୋଲି ଯେତେ ବୁଝାଇଲି ପିଲା ବୁଝିଲାନି ।

(ଆଶ୍ଚର୍ଯ୍ୟ ହୋଇ) ପଇସା ଆଣିଲୁ କୁଆଡ଼ୁ ? କାଲେ ପଇସା ନେଇଯିବ ବୋଲି ତ ସବୁଆଡ଼ ତାଲା । ବାପା ସିନେମା ଯାଉଛନ୍ତି ଜାଣିଲେ କାଲେ ପିଲେ କହିବେ ଯିବାକୁ, ସେଇଥିପାଇଁ ତ ମୁଁ କଚେରୀରୁ ଏଣୁ ଏଣୁ ସିନେମା ଆସେ ; ଘରେ ପହଞ୍ଚି କହିଦିଏ କଚେରୀର ହାକିମ ଡାଉରୁ ମଣିଷ ଆଉ ସଅଳ ଟିକିଏ ଘରକୁ ଆସିପାରିଲା ନାହିଁ ।”

( ଟିକଟ ବାବୁ ଚନ୍ଦ୍ରଧର ବାବୁଙ୍କର ଡାକ ଶୁଣି ପାରି ଟିକଟି ଭିତରୁ କହିଲେ )

ଟିକଟବାବୁ—“କିଏ ଚନ୍ଦ୍ରଧର ବାବୁ କି, ଆପଣ ତ ଆମର ନିତି ଗରାଖ । ସେ ଭିତରୁ ଏ ଘରଭିତରକୁ ବୁଲି ଆସନ୍ତୁ । ବେଳ ହୋଇଗଲାଣି । ଟିକଟ ନେଇ ଚାଲିଯିବେ ।”

(ଏତକ କହୁ କହୁ ଆଉ ଗୋଟିଏ ଲମ୍ବା ଟିଣ୍ ଟିଣ୍ ଘଣ୍ଟି ବାଜିଉଠିଲା ସିନେମା ଆରମ୍ଭର ନିର୍ଦ୍ଦେଶ ଦେଇ) । ଚନ୍ଦ୍ରଧର ବାବୁ ଟିକଟଘରକୁ ତୁରନ୍ତ ଚାଲିଗଲେ । ୩ୟ ବ୍ୟକ୍ତି ଟିକଟ ଆଣିବାକୁ ଅତ୍ୟନ୍ତ ବ୍ୟଗ୍ରଭାବ ପ୍ରକାଶ କରି ଠେଲାପେଲା ହେବା ବେଳେ କାହାର ଯୋତାରେ ତା ଗୋଡ଼ ମକଚି ହୋଇଗଲା । )

୩ୟ ବ୍ୟକ୍ତି—“ଆରେ ମୋ ଗୋଡ଼ ଗଲା ରେ !” (ଯୋତା କହି ମକଚିଥିବା ବ୍ୟକ୍ତିକୁ ଏକ ଧକ୍କା ଦେବା ଏବଂ ଟିକଟ ପାଇବା ଲକ୍ଷ୍ୟରେ ପୁଣି ଭିତରକୁ ପ୍ରବେଶ କରିବା )

ମକଚିଥିବା ବ୍ୟକ୍ତି—“ଏତେ ରାଗ କାହିଁକି ? ମୁଁ କ'ଣ ତୁମ ଗୋଡ଼କୁ ଚାହିଁଛି ? ଲକ୍ଷ୍ୟ ତ ରହିଲା ଏକ ଆଡ଼େ, ତୁମରି ଯୁଆଡ଼େ ଆମର ବି ସିଆଡ଼େ, ଗୋଡ଼କୁ ହୁସିଆରରେ ରଖନ୍ତୁ ?”

୬ଷ୍ଠ ବ୍ୟକ୍ତି—(ଆଉ ଜଣେ ଭଦ୍ର ବ୍ୟକ୍ତି ଟିକଟ ନେଇ ବାହାରକୁ ଆସିବାର ଦେଖି)

"ହେଇଟି ବାବୁ ? ମୋ ଟିକଟ ଆଣିଲ ଟି ! ହଉ, ସିନେମା ଆରମ୍ଭ ହେବାର ଘଣ୍ଟି ହୋଇଗଲାଣି ପରା ।"

ଭଦ୍ରବ୍ୟକ୍ତି (ବିରକ୍ତ ଭାବରେ)—"କ ଟିକଟ ରେ ? ଆସନ୍ତୁ ଜଗନ୍ନାଥବାବୁ, ସାଧୁବାବୁ, ସଅଳ ଆସନ୍ତୁ । ବେଳ ହୋଇଗଲା ।" (ଏହା କହି ଚାଲିଯିବାବେଳେ)

ଚଷୁ—"ଆରେଃ—ମୁଁ ଏଇଲେ ତୁମକୁ ଟିକଟ ପାଇଁ ପଇସା ଗଣିଦେଲି । ତୁମେ ପୁଣି କହୁଛ କ ଟିକଟ ! କେତେ କଷ୍ଟରେ ପେଟକୁ ନ ଖାଇ, ଏ ଚାରି ନେକଡ଼ାରେ ଚଳାଇ ଏତେ ହନଧର ପଇସା ସିନେମା ଦେଖିବା ପାଇଁ ସଞ୍ଚକରି ରଖିଥିଲି, ତୁମକୁ ଦେଲି ଟିକଟ ଆଣିବାକୁ—ଏଇଲେ ନେଲ - ପୁଣି ମାନୁନ ? ଖାସା ବାବୁ ହୋଇଛ ! ଆମକୁ ଏ ଦଗାବାଜ ! ଯାକୁ ଧର୍ମ ସହିବ ଟି ?"

ଭଦ୍ରବ୍ୟକ୍ତି—"ଆରେ ଯା—ଯାଃ, ବେଶୀ ବକ୍ ବକ୍ କରନା । ହେଇଟି ଜାଣିଥା, (ଜାବୁଡ଼ା ଉହୁଁଚେଇ) ସିନେମା ବେଳ ତ ହୋଇଗଲାଣି, ନ ହେଲେ ତୋ ବେଳକୁ ମୋ ବେଳ ହୋଇଥାନ୍ତା ।"

(ଏହା କହି ଭଦ୍ରବ୍ୟକ୍ତି, ଜଗନ୍ନାଥ ବାବୁ ଓ ସାଧୁ ବାବୁ ତିନିଜଣ ଚର ଚର ହୋଇ ଚାଲିଗଲେ ସିନେମା ଦେଖିବା ଉଦ୍ଦେଶ୍ୟରେ ।)

ଚଷୁ—"ଆରେ, ଖାସା ବୁଝାମଣା ତ ! ମାହାଳିଆରେ ଆସିଲି ; ଘରେ ନାହିଁ କରୁଥିଲା ଟି, ତା କଥା ମାନିଲିନି, ଫଳ ଯା ହେଲା । ଘରେ ଚାଉଳ ନାହିଁ ବୋଲି ସକାଳେ ରୋଷେଇ ବନ୍ଦ ଥିଲା । ପୁଅକୁ ଜର ହୋଇଛି ଯେ ଘରେ ପଥିପାଚନକୁ ସମ୍ବଳ ନାହିଁ । ପୁଅ କହିଥିଲା, 'ବାପା, ମୋ ପିଁ ବିସ୍କୁଟ୍ ଆଣିବ ।'

ଆରେ ଚଣ୍ଡାଳ ମୁଁ, ପୁଅ ମୁହଁରୁ ଛଡ଼ାଇ ଆଣିଲି ସିନେମା ଦେଖିବାକୁ ଯେ, ଏବେ ସିନେମା ଦେଖା ତ ହେଲାନି, ଧନ ଏବେ ଗ୍ରେଶ ହାବୁଡ଼ରେ ଗଲା ।"

୭ମ ବ୍ୟକ୍ତି (୬ଷ୍ଠ ପ୍ରତି), "ହାତରେ ତ ଧନ ନାହିଁ, ଏତେ ସିନେମା ସଉକ କାହିଁକି ?"

୬ଷ୍ଠ—"ସିନେମା ସଉକ କଥା କହୁଛ ! ଆମ ସାତ ପୁରୁଷି ଏ ସିନେମା କ'ଣ ଜାଣନ୍ତିନି । ହେଲେ କ'ଣ ହେବ, ଏ ଯୁ ବାବୁ ଭାଇଆ ସବୁ ବେଳେ ସିନେମା ବାଇସ୍କୋପ ଦେଖି ନାନା କଥା ଶିଖୁଛନ୍ତି, ଆମ ମଫସଲଙ୍କୁ ସେହି ନାମରେ ଗାଳି ଦେଇ କହନ୍ତି, 'ଏଗୁଡ଼ାକ ମଣିଷ ନୁହନ୍ତି, ସିନେମା ବାଇସ୍କୋପ ତ ଦେଖିବେନି, ମଣିଷ ହେବେ କ'ଣ ?' ଏ ଗୁଡ଼ାକ ଶୁଣି ଶୁଣି ମନ ହେଲା ଯଦି ହେଲେ ସିନେମା ଦେଖିଯାଆନ୍ତି, ମଣିଷ କିପରି ହୁଅନ୍ତି ତା ଟିକିଏ ଶିଖିଯାଆନ୍ତି ।"

୭ମ ବ୍ୟକ୍ତି—"ତେବେ ଗଲନି, ନିଜେ ଟିକଟ କରିଥାନ୍ତ, ତୁମର ଜାଣିବାର କଥା, ଏଠାରେ କହୁତ ଗ୍ରେଶ ହୁଏ ।"

୮ମ ବ୍ୟକ୍ତି—"ଆରେ ଗ୍ରେଶ ହେବନି ! ଏ ସିନେମା ଯେପରି ଲୋକଙ୍କୁ ପାଗଳ କରୁଛି, ପୁଣି ସେଥିରେ ପଇସା ଯେପରି ଉଡ଼ୁଛି, ସେଥିକୁ ଗ୍ରେଶ ନ କରି ଆଉ ଉପାୟ କ'ଣ ଅଛି ?"

( ସିନେମା ଆରମ୍ଭ ହୋଇଯିବାରୁ ଟିକଟ ପାଇ ସିନେମା ଉଦ୍ଦେଶ୍ୟରେ ଅନ୍ୟମାନେ ଘରେ ପଶିଲେ; ୬ଷ୍ଠ ବ୍ୟକ୍ତି, ୭ମ ବ୍ୟକ୍ତି ଓ ୮ମ ବ୍ୟକ୍ତି ଆଉ ୩/୪ ଜଣ ଭଗ୍ନମନୋରଥ ହୋଇ ପ୍ରତ୍ୟାବର୍ତ୍ତନ କରୁଛନ୍ତି । )

୬ଷ୍ଠ ବ୍ୟକ୍ତି—"ଆଚ୍ଛା ବାବୁ, ସିନେମା ଦେଖା ତ ହେଲାନି, ଏବେ କହିଲ, ଏ ସିନେମାପାଇଁ ଲୋକ ସବୁ ଏତେ ପାଗଳ କାହିଁକି ? ଏଥିରୁ କ'ଣ ସବୁ ଶିକ୍ଷା କରନ୍ତି ?"

୭ମ ବ୍ୟକ୍ତି—"ସିନେମାରୁ ନାନା ଦେଶର ହାଲଚାଲ ଜାଣି ହୁଏ । କେଉଁଠି ଲୋକେ କିପରି ଚଳନ୍ତି, ତାଙ୍କର ଢଙ୍ଗଢାଙ୍ଗ ସବୁ ଜଣାପଡ଼େ ।"

୬ଷ୍ଠ ବ୍ୟକ୍ତି—"ଆଉ କ'ଣ ଜାଣନ୍ତି ?"

୮ମ ବ୍ୟକ୍ତି—"ସେ ତ ଗଲା ଦେଶ ବିଦେଶ କଥା । କାହିଁ ଇଂଲଣ୍ଡ ! କାହିଁ ଆମେରିକା ! ଯେଉଁଠି ଆମେ ପହଞ୍ଚି ପାରିବାନି ସେ ବିଷୟ ଜାଣିବା ତ ଆମର ଲୋଡ଼ା ।"

୭ମ ବ୍ୟକ୍ତି—"ଆରେ, ଥରେ ଇଂଲଣ୍ଡ କି ଆମେରିକା ଗଲେ ଟଙ୍କା ୨।୩ ହଜାର ଲୋଡ଼ା । ପୁଣି ଦେଶର ଚାଲିଚଳଣି ଜାଣିବାକୁ ହେଲେ ସେଠି କିଛି ବର୍ଷେ କି ଦି ବର୍ଷ ରହିଲେ ୧୦।୧୨ ହଜାର ଟଙ୍କା ବି ନିଅଣ୍ଟ । କାହାର ସେଥିକୁ ବଳ ଅଛି ଯେ ଯିବ ?

ସିନେମା ଦେଖି ଦେଲେ କେତେ ବା ଖର୍ଚ୍ଚ ହେଉଛି ? ଅଳ୍ପ ଖର୍ଚ୍ଚରେ ଏତେ କଥା ଜାଣିବା କଣ ବାଞ୍ଛନୀୟ ନୁହେଁ ?"

୬ଷ୍ଠ ବ୍ୟକ୍ତି—"ହଁ ବାବୁ, ଯାହା କହିଲ ସତ କଥା । କାହାର ବା ବଳ ଅଛି ଏତେ ଖର୍ଚ୍ଚ କରିବାକୁ ? ମୋଠଁ ସେ ଭଦ୍ରବ୍ୟକ୍ତି ପଇସା ଠକାଇ ନେବା ହେତୁ ମନ କରିଥିଲି, ଆଉ ପିଲା କବିଲାଙ୍କୁ ଉପାସରେ ରଖି ସିନେମା ଦେଖିବିନି ବୋଲି । ମାତ୍ର ତୁମ କଥା ଶୁଣି ମୋ ମନ ହେଉଛି ପୁଣି ସିନେମା ଦେଖିବାକୁ । ସତେ, ସିନେମାରୁ ଏତେ କଥା ଲୋକ ଜାଣିପାରେ ! ତେବେ ଲୋକ ସିନେମା ତ ଥରେ ଦେଖି ଦେଲେ ଚଳନ୍ତା, ଏତେ ପାଗଳ କାହିଁକି ?"

୮ମ ବ୍ୟକ୍ତି—"ପାଗଳ ହେବନି ? କ'ଣ ଗୋଟାଏ ଦେଶକଥା ବାହାରୁଚି ? ପୃଥିବୀରେ କେତେ ଦେଶ ନାହିଁ ? ସବୁ ସ୍ଥାନର

ସମସ୍ତ ବିଷୟ ଜାଣିବାକୁ ହେଲେ ତ ଏ ଜୀବନଯାକ ସରିଯିବ, ଅଥଚ ଜାଣିବା ସରିବ ନାହିଁ ।”

୭ମ ବ୍ୟକ୍ତି—“ଏ ତ ଗଲା ଦେଶ ବିଦେଶ କଥା ; ପୁଣି ଭୂଗୋଳ କଥା ସାଙ୍ଗକୁ ଇତିହାସ କଥା ବି ଅଛି । ପୌରାଣିକ ଗଳ୍ପ, ସାମାଜିକ ଚିତ୍ର ଓ ଅନେକ ନୀତିଶିକ୍ଷାମୂଳକ ଚିତ୍ରମାନ ଅଛି । ସେସବୁ ଦେଖିଲେ କାହାର ମନ ହେଲେ ଗ୍ଭଡ଼ିବ ? ମଣିଷର ଏସବୁ ଜାଣିବାର କଥା କି ନୁହେଁ ?”

୮ମ ବ୍ୟକ୍ତି—“ଆଉ ଜାଣିବନି, କ'ଣ କୂପମଣ୍ଡୂକ ହୋଇ ଘରେ ବସିଥିବ ? ମଫସଲିଙ୍କ ପରି ଅନ୍ଧାରରେ ସଢ଼ୁଥିବ ? ଦୁନି-ଆଁରେ କେତେ ନୂଆ ନୂଆ କଥାମାନ ନ ଘଟୁଛି ! ସେଗୁଡ଼ାକର ଖବର ଅନ୍ତର ମଣିଷ ରଖିବନି ?”

୬ଷ୍ଠ—“ଆଚ୍ଛା ବାବୁ, ଯାହା କହିଲଣି, ଶୁଣି ମୋ ଭାଗ୍ୟକୁ କେବଳ ନିନ୍ଦୁଛି, ଭାବୁଛି, ଭଗବାନ୍ ମୋତେ ଏ ଗରିବ କୁଳରେ କାହିଁକି ଜନ୍ମ ଦେଲେ ? ମୋତେ ଧନୀଘରେ ଜନ୍ମ ଦେଇଥାନ୍ତେ କି ! ମୁଁ ଅଜସ୍ର ସମ୍ପତ୍ତି ଲଭିକରି କେବଳ ଏହି ସିନେମା ଦେଖିବାରେ ସେ ସବୁ ସମ୍ପତ୍ତି ଉଡ଼ାନ୍ତି ! ଆରେ, ମଣିଷ-ଜନ୍ମ ବଡ଼ ଦୁର୍ଲଭ । ଏ ମଣିଷ ଜନ୍ମ ପାଇ ଲୋକ ଯଦି ନାନା ବିଷୟ ନ ଶିଖିବ, ତେବେ ଏ ଜୀବନକୁ ଧିକ୍ ।”

୭ମ – ‘ତେବେ ବୁଝିଲ ତ, ମଣିଷ କାହିଁକି ସିନେମା ପାଇଁ ଏତେ ବାୟା, କାହିଁକି ଲୋକ ସିନେମା ଦେଖିବା ପାଇଁ ଚୋରି କରିବାକୁ ବି ପଛାନ୍ତି ନାହିଁ । ବାପା ଆସେ, ସ୍ତ୍ରୀ ଓ ପିଲାଙ୍କୁ ଲୁଚି, ମା ଆସେ ପିଲାଙ୍କୁ ଲୁଚି, ଏପରି କି କୋଳର ପିଲାକୁ ଚାକର ଚାକରାଣୀଙ୍କ ପାଖରେ ଛାଡ଼ି । ପିଲାମାନେ ଆସନ୍ତି ବାପମାଙ୍କୁ ଲୁଚି,

ଭାଇ ଆସେ ଅନ୍ୟ ଭାଇମାନଙ୍କୁ ଲୁଚି, ଆଉ ଭଉଣୀ ଯାଏ ସମସ୍ତଙ୍କୁ ଲୁଚି ।"

୬ଷ୍ଠ ବ୍ୟକ୍ତି—"ଆଚ୍ଛା ବାବୁ, ସମସ୍ତଙ୍କର କ'ଣ ସବୁ ବିଷୟ ଜାଣିବା ଉଚିତ ? ଏ ଯୁ ଭୂଗୋଳ, ଇତିହାସ, ପୁରାଣ ଓ ସାମାଜିକ କଥାମାନ କହିଲ, ସବୁ ବିଷୟରେ ପ୍ରତ୍ୟେକଙ୍କର କ'ଣ ଜାଣିବାର କଥା ?

୮ମ ବ୍ୟକ୍ତି—"ତା କ'ଣ ସମ୍ଭବ ? ତଥାପି ଯେତେ ଦୂର ସମ୍ଭବ, ଯେ ଯେତେ ଜାଣିପାରିବ, ସେ ସେତେ ଏ ଯୁଗକୁ ଖାପ୍ ଖାଇବ ।"

୬ଷ୍ଠ ବ୍ୟକ୍ତି—"ଆଚ୍ଛା ବାବୁ, ତୁମେ ତ ବହୁବାର ସିନେମା ଯାଇଛ । କ'ଣ ଶିଖିଛ କହିଲ । ତୁମ କଥା ଶୁଣିବାଠାରୁ ମୋ ମନଟା ବଡ଼ ଗୋଳମାଳିଆ ଧରିଲାଣି । ଆଗ ଭୂଗୋଳ ଆଡ଼ୁ ଆରମ୍ଭ କର ।"

୭ମ ବ୍ୟକ୍ତି—"ମୁଁ ତା ଉତ୍ତର ଦେଉଛି । ତାଙ୍କ ଦେଶରେ ବଡ଼ ବଡ଼ କୋଠା, ବଡ଼ ବଡ଼ ରାସ୍ତା, କେଉଁଠି ବଡ଼ ବଡ଼ ସୁନ୍ଦର ପୁଷ୍କରଣୀ, ପାର୍କ ଓ ବିଭିନ୍ନ ଯାନବାହନ ସବୁ ଥାଏ, ଦେଖିବାକୁ ପାଉ ଏବଂ ଏ ଦେଶରେ ସେପରି କରିବାକୁ ଚେଷ୍ଟା କରୁ । ପୁଣି କେଉଁଠି ଜଙ୍ଗଲରେ ବାଘ କାହାକୁ ଆକ୍ରମଣ କରୁଛି, କପରି ସେ ସେଥିରୁ ରକ୍ଷା ପାଉଛି, ତା ବି ଶିକ୍ଷା ମିଳେ । ଇମିତି ଅନେକ କଥା ।"

୬ଷ୍ଠ ବ୍ୟକ୍ତି—"ତାଙ୍କ ଦେଶର କୋଠା, ରାସ୍ତା, ପୋଖରୀ, ପାର୍କ, ଯାନବାହନ ଓ ଆଉ ସବୁ ଯାହା ଦେଖିଲ, ତାକୁ ଏଠାରେ ଯଦି କରି ନ ପାରି ତେବେ ? ଯଦି ବା କର, ତା କ'ଣ ହେଲେ ସମସ୍ତଙ୍କ ପାଇଁ କରି ପାରିବ ?"

୮ମ ବ୍ୟକ୍ତି—"ନ କରିପାରିଲେ ଅବଶ୍ୟ ମନରେ ଦୁଃଖ ଆସିବ । ଯଦି ବା ହୁଏ, ସମସ୍ତଙ୍କ ପାଇଁ ହେବା ଅସମ୍ଭବ ।"

( ଏପରି ସମୟରେ ମାଧବ ବାବୁ ନାମରେ ଜଣେ ସ୍ୱଦେଶ-ପ୍ରେମୀଙ୍କର ପ୍ରବେଶ )

ମାଧବ ବାବୁ—"ଆଚ୍ଛା, ତୁମ ସହିତ ମୋର ପରିଚୟ ନାହିଁ । ମାତ୍ର ତୁମ ତିନିଜଣଙ୍କର ଆଳାପ ଶୁଣି ମୋର ବଡ଼ କୌତୂହଳ ଜାତ ହେଲା । ଏବେ ତୁମେ ଏବଂ ତୁମପରି ଲୋକେ ଯେପରି ଅମଡ଼ାମଡ଼ା ଚାଲିଛନ୍ତି, ସେଥିରେ ଦେଶକୁ କେଉଁଠି ଯେ ଥୋଇବେ, ଜାଣି ହେଉନି । ଆମର ଯେତେ ସମ୍ପତ୍ତି ଅଛି ତା କେବଳ ସିନେମାକୁ ତ ନିଅଣ୍ଟ । ପୁଣି ଆଉ ବିଷୟ ତ ଅଛି । ଲୋକେ ଖାଇବେ, ପିନ୍ଧିବେ, ରହିବେ ଆଉ ଦେହପା'କୁ ଜଗିବେ; ଏ ସବୁ ହବ ନା ନାହିଁ ?"

୭ମ ଓ ୮ମ—(ଏକାବେଳକେ ) "କିଏ ନାହିଁ କଲା କି ?"

ମାଧବ ବାବୁ—"ନାହିଁ ସିନା ପାଟିରେ କରୁନ, ମାତ୍ର କାମରେ ନାହିଁଠୁଁ ଅଧିକା କରିପକାଉଛ । ଆଚ୍ଛା, ମୁଁ ତୁମକୁ ପଚାରେ, ସିନେମାରୁ ତ ବହୁତ ଶିକ୍ଷା କରୁଛ ବୋଲି କହୁଛ, ତୁମେମାନେ ସେମାନଙ୍କର କେଉଁ ଭଲ ଗୁଣସବୁ ଶିକ୍ଷା କରିଛ କହିଲ ।"

୭ମ ବ୍ୟକ୍ତି—"ତାଙ୍କର ସମୟାନୁବର୍ତ୍ତିତା, ତାଙ୍କର ସାଧୁତା, ତାଙ୍କର ନିର୍ଭୀକତା, ସ୍ପଷ୍ଟବାଦିତା ଏବଂ ପରୋପକାରିତା ଆଦି ଅନେକ କଥା ।"

ମାଧବ ବାବୁ—"ସିନେମା ଦୁଆର ମୁହଁରେ ଯୁ ଧାରଣା ଦେଇ ଏତେ ସମୟ ଧରି ସାମାନ୍ୟ ଟିକେଟ ଖଣ୍ଡିଏ ପାଇବା ପାଇଁ ଛିଡ଼ା ହେଉଛ, ସେଥିରୁ ତୁମମାନଙ୍କର ସମୟର ମୂଲ୍ୟବୋଧ କେତେ

ହୋଇଛି ତା କ'ଣ ଜଣା ପଡ଼ୁନି ? ତୁମର ଘରେ ପାଞ୍ଚଟାରେ ପହଞ୍ଚିବାର କଥା । ତେଣେ ବାପା ଆଉ ମା ଚିନ୍ତାରେ ରହିଥିବେ, ପୁଅ ଆସିବ, ଓ ଖାଇବ ଇତ୍ୟାଦି । ତୁମେ ଯଦି କାହାକୁ ନ ଜଣେଇ ମିଥ୍ୟା ଆଳ ଦେଖେଇ ସେଠି ରାତି ୧୦ଟାରେ ପହଞ୍ଚ, ତେବେ କେତେଦୂର ସମୟାନୁବର୍ତ୍ତୀ, ସ୍ପଷ୍ଟବାଦୀ, ସାଧୁ ଓ ନିର୍ଭୀକ ହେବାକୁ ଶିକ୍ଷାକରିଛ ତା'କଣ ଜଣା ପଡ଼ୁନି ? ପୁନଃ, ଲୋକେ ଖାଇବାକୁ ଦାନା ଏବଂ ପିନ୍ଧିବାକୁ କନା ନ ପାଉଥିବା ବେଳେ ଏବଂ ରାସ୍ତାଘାଟରେ ପୋକ ମାଛି ପରି ମରୁଥିବା ବେଳେ ତୁମେ, ନିଜର ଦୃଷ୍ଟିଶକ୍ତି ନଷ୍ଟ ହେଉ ପଛେ, ସିନେମା ପଛରେ ଅଜସ୍ର ଉଡ଼ାଉଚ । ସେଥିରୁ ତୁମମାନଙ୍କର ପରୋପକାରିତା ଶିକ୍ଷା ଯେ କେତେଦୂର ହେଉଛି ତା'କଣ ଜଣା ପଡ଼ୁନି ?"

୬ଷ୍ଠ ବ୍ୟକ୍ତି—"ବାବୁ, ଆପଣ ତ' ଜଣେ ବିଜ୍ଞ ବ୍ୟକ୍ତି ପରି ଜଣା ପଡ଼ୁଛନ୍ତି । ଏମାନଙ୍କର କଥାରେ ମୋର ମୁଣ୍ଡ ବିଗିଡ଼ି ଯାଇଥିଲା । ଏବେ ମୋ ମୁଣ୍ଡ ସଳଖ ବାଟକୁ ଆସିବାପରି ଜଣା ପଡ଼ୁଛି । ଆଚ୍ଛା ବାବୁ, ଏମାନେ ସିନେମାରୁ ସାଧୁତା ବା ଚୋରି ନ କରିବା, ମିଛ ନ କହିବା ଆଉ କାହାକୁ ନ ଠକିବା ଶିଖନ୍ତି, ପୁଣି ଏତେ ଖର୍ଚ୍ଚ କରି ଆଉ ଏତେ ସମୟ ନଷ୍ଟ କରି । ଆଚ୍ଛା, ସାଧୁତାର ନମୁନା ସିନେମା ଦୁଆର ମୁହଁରୁ ଜାଣି ପାରୁଛି । ଯାହାର ଦୁଆର ମୁହଁରୁ ଲୋକ ଚୋର ହେବାକୁ ପ୍ରେରଣା ପାଏ, ମିଛ କହିବାକୁ ଏବଂ ଅନ୍ୟକୁ ଠକିବାକୁ ବଳ ପାଏ, ଭିତରେ ପଶିଲେ ତ ଆହୁରି ଅନେକ କଥା ଶିଖୁଥିବ ? କୁହେଁ ବାବୁ ? ଆପଣ ଆସିବାରୁ ମୋର କହିବାକୁ ସାହସ ପଡ଼ିଲା ।"

୭ମ ବ୍ୟକ୍ତି – "ତେବେ ଆମେ କ'ଣ ମନ୍ଦ ଗୁଣ ସବୁ ଶିକ୍ଷା-କରୁଛୁ ଏ ସିନେମାରୁ, ଏକଥା କହିବା ତୁମର ଲକ୍ଷ୍ୟ ?"

୮ମ ବ୍ୟକ୍ତି—"ଗୁଲଚେର, ଯୁାଙ୍କ ସହିତ କଥାବାର୍ତ୍ତା କରି କିଛି ଲାଭ ନାହିଁ । ଏମାନେ ତ ଜାଣି ଚଷା, କର୍ପୂରର ଗୁଣ ଜାଣିବେ କୁଆଡ଼ୁ ?"

ମାଧବ ବାବୁ—"ଆମେ ଚଷା, ମାନୁଛୁ, ଆଉ ତୁମକୁ ବି ଚଷା ହେବାକୁ ମୁଁ କହୁନି । ତେବେ ତୁମ ଆଲୋଚନାର ଉତ୍ତର ଦେବା ଉଦ୍ଦେଶ୍ୟରେ ହିଁ ଯାହା କହୁଛି । ଆଚ୍ଛା ବାବୁ, ତୁମେ ତ ଆମେରିକା, ଇଂଲଣ୍ଡ ଆଉ ଅନ୍ୟ ଦେଶ ବିଦେଶ କଥା ଜାଣିବାକୁ ଏତେ ଅଧିକ ଆଗ୍ରହ ପ୍ରକାଶ କରୁଛ ଯେ କେବଳ ସିନେମା ହିଁ ତୁମର ଆକର୍ଷଣ ହୋଇଛି ; ତୁମେ ସେ ସବୁ ନ ଜାଣିଲେ କିଛି ହେଲେ ତୁମର କ୍ଷତି ହୁଅନ୍ତା କି ? ତୁମର ଚଳିବାରେ ଏବଂ ପଢ଼ିବାର ମଧ୍ୟରେ ସୁଖ ସ୍ୱାଚ୍ଛନ୍ଦ୍ୟ ରକ୍ଷା କରିବାରେ କିଛି ଅସୁବିଧା ହୁଅନ୍ତା କି ?"

ଚଷ୍ଟି—"କାହିଁକି ମ, ଯ୍ୟାର ଉତ୍ତର ମୁଁ ଦେଉଛି । ଆମ ଘରୁ ତ କେହି ସିନେମା ଦେଖି ଆସି ନାହାନ୍ତି । ତଥାପି ଆମର ସିନା ଖାଇବାକୁ ଅଭାବ ଅଛି, ମାତ୍ର ସିନେମା ନ ଦେଖିବା ହେତୁ ତ ଚଳଣିରେ କିଛି ଅସୁବିଧା ହେଉନି । ବରଂ ଭାବୁଛି, ଯଦି ସିନେମା-ରୋଗ ଆମ ଘରକୁ ବ୍ୟାପିଥାନ୍ତା, ତେବେ ଆମର ବାସି ଓଳିକ ଦାନା ରହନ୍ତାନି, ଆମେ ସବୁ ଗୋରୁ ପାଲଟି ଥାନ୍ତୁ । ସମସ୍ତେ ମିଛୁଆ ପାଲଟିବା ଫଳରେ ଘରେ କେହି କାହାକୁ ବିଶ୍ୱାସ କରନ୍ତେ ନାହିଁ । ତେଣୁ ଘୋର ଅଶାନ୍ତି ରହନ୍ତା କାଳକାଳକୁ ।"

୮ମ ବ୍ୟକ୍ତି—"ତୁମେ କ'ଣ କୁହଁ ଯେ ଲୋକ ସୁଖ ଶାନ୍ତିରେ ରହିବାକୁ ହେଲେ ସିନେମାରୁ କିଛି ଶିକ୍ଷା କରିବ ନାହିଁ ?"

ମାଧବ ବାବୁ—"ମୁଁ ତ ତା ନାହିଁ କରୁନି । ତେବେ ଆମେରିକା, ଇଂଲଣ୍ଡ ଓ ଅନ୍ୟ ଦେଶ କଥା ନ ଜାଣିଲେ ଯେ

ଚଳପିବ, ତା'ର ପ୍ରମାଣ ପାଇଲ । କନ୍ତୁ ଯାହା ନ ଜାଣିଲେ ଏବଂ ଯାହା ପ୍ରତି ଦୃଷ୍ଟି ନ ଦେଲେ, ବ୍ୟକ୍ତି, ପରିବାର, ସମାଜ ଓ ଦେଶ ଦୁର୍ଦ୍ଦଶାଗ୍ରସ୍ତ ହୁଏ, ତା' ତ ଆଗ ଜାଣି ରଖିବା କଥା ।"

୭ମ ବ୍ୟକ୍ତି—"ତା କଏ ନାହିଁ କଲା କି ?"

ମାଧବ ବାବୁ—"ଆଚ୍ଛା ମୁଁ ପଚାରେ, ତୁମ ପଡ଼ୋଶୀ ଘରେ କଏ ଖାଇଲା ନ ଖାଇଲା, ତା ବୁଝୁଛ ? ତୁମ ସାଇରେ କେଉଁ ଦୁର୍ଦ୍ଦିନରେ ପଡ଼ି ମୃତ୍ୟୁମୁଖରେ ପଡ଼ିବାକୁ ଯାଉଛି, ସେଥିପ୍ରତି ଲକ୍ଷ୍ୟ ରଖିଛ ? କେଉଁ ଗାଁକୁ ରାସ୍ତା ନାହିଁ, କେଉଁଠି ସ୍କୁଲଟିଏ ନାହିଁ, କେଉଁଠି ପିଇବାକୁ ପାଣିର ବ୍ୟବସ୍ଥା ନାହିଁ, କେଉଁଠି ରୋଗ ବ୍ୟାଧିର ନିରାକରଣ ପାଇଁ ଚେର ମୂଳର ବଗିଚା କରିବାକୁ ହେବ ବା ସହଜ ଚିକିତ୍ସାର ବ୍ୟବସ୍ଥା କରିବାକୁ ହେବ, ଏସବୁ ପ୍ରତି ଲକ୍ଷ୍ୟ ରଖିଲେ ବ୍ୟକ୍ତି, ପରିବାର ତଥା ସମାଜର ଯେ ଅଶେଷ ମଙ୍ଗଳ ସାଧିତ ହେବ, ଏଥିରେ କିଛି ସନ୍ଦେହ ଅଛି କି ?"

୭ଷ୍ଟ ବ୍ୟକ୍ତି—"ସିନେମା ନ ଦେଖିଲେ ଏସବୁ ଜାଣିବାକୁ ବେଶି ସମୟ ପାଇବେ । ଏଥିକୁ ସିନେମା କ'ଣ ଲୋଡ଼ା ? ବରଂ ସିନେମାରେ ଯୁ ଅଜସ୍ର ସମ୍ପତ୍ତି ବରବାଦ୍ ହେଉଛି, ସେ ସବୁକୁ ଏପରି ଭଲ କାମରେ ଲଗାଇଲେ ସମାଜର ତ ମଙ୍ଗଳ ହେବ, ପୁଣି ଯୁ ସିନେମାରେ ବାୟା ହୋଇ ଚୋର, ମିଛୁଆ ଓ ଠକ ପାଲଟୁଛନ୍ତି ତା ବି ବନ୍ଦ ହେବ !"

ମାଧବ ବାବୁ—"କେବଳ ସେତିକ ନୁହେଁ । ଅନ୍ୟ ଦେଶର ଭଲ କଥାଗୁଡ଼ାକ ଆମକୁ ଯେତେ ପ୍ରେୟ ନୁହେଁ ସେମାନଙ୍କର ମନ୍ଦ ଗୁଣଗୁଡ଼ିକ ତାଠୁ ବହୁ ଗୁଣରେ ପ୍ରେୟ ଜଣାପଡ଼େ । ତେଣୁ ଏତେ ନଗ୍ନ ଚିତ୍ରର ପ୍ରଭାବ ଏ ସମାଜକୁ କଳୁଷିତ କରୁଛି । କ୍ୟାଲେଣ୍ଡରମାନଙ୍କରେ ଆମର ଆରାଧ୍ୟ ଦେବତା ରାଧାକୃଷ୍ଣ, ଓ ହର-

ପାଦବକ୍ଷଙ୍କୁ ଏମିତ ବଲ୍‌ଡାନ୍‌ସିଂ ପୋଜ୍‌ରେ (Ball dancing pose) ନଗ୍ନ ଭାବରେ ଦେଖାଯାଉଛି, ଫଳରେ ଭକ୍ତିଭାବ ଆସିବା ପରିବର୍ତ୍ତରେ କାମନାର ଉଦ୍ଦୀପନା ହେଉଛି । ନାନା ପ୍ରକାର ଅଯଥା 'ଅଭାବର ସୃଷ୍ଟି କରୁଛି,' ଏ ସିନେମା ଦେଖା । ଫଳରେ ସମସ୍ତ ସମାଜକୁ ଏକ ଘୋର ଦୁର୍ବାର ଲାଳସା ଓ ଅଶାନ୍ତି ଗ୍ରାସ କରିବାକୁ ବସିଛି ।"

୬ଷ୍ଠ ବ୍ୟକ୍ତି—"ବାବୁ, ଆମର ମୁଠେ ଭଲ ଖାଇବାକୁ ଥିବ, ଖଣ୍ଡେ ପିନ୍ଧିବାକୁ ଥିବ, ମୁଣ୍ଡ ଗୁଞ୍ଜିବାକୁ ବାସ ଥିବ, ଆଉ ଦେହପା' ବେଳକୁ ଚେରମୂଳ ଥିବ, ତେବେ ଭଗବାନଙ୍କ କୃପାରୁ ଆମର ଆଉ ଅସୁବିଧା କ'ଣ ? ଆଉ ଓଠକୁ ନାଲି ନ କଲେ କ'ଣ ଚଳିବନି ? ଏପରି ହେଲେ ସିନା ସମସ୍ତେ ସମାନ ଭାବରେ ଆପେ ଆପେ ଚଳିପାରିବେ । ନହେଲେ ତ ଥୋକେ ଗୁହିଁବେ ବଡ଼ ବଡ଼ କୋଠାଘର, ମଟର—ଆଉ ସେ ମଟର ଚଢ଼ିବେ ଅନ୍ୟମାନଙ୍କର ଧନରେ । ପୁଣି ଯେଉଁମାନଙ୍କର ଧନରେ ଚଢ଼ିବେ, ସେହିମାନଙ୍କ ଆଡ଼କୁ ତାଙ୍କର ବିଷାକ୍ତ ମଟର ଗ୍ୟାସ୍ ଗୁଡ଼ିବେ । ବେଳେବେଳେ ସେମାନଙ୍କୁ ନିଶାହ ମନେକରି ମଟର ଧକ୍କା ବି ଲଗାଇବେ ।"

୭ମ ବ୍ୟକ୍ତି (୮ମ ପ୍ରତି)—"ଆରେ, ଏମାନେ ସଂସାରଚିତ୍ର ଦେଖି ନାହାନ୍ତି ପରା ! ଦେଖିଲେ ମନ ଆଉ ଗୁଡ଼ନ୍ତା ? 'ବାବା ରୋଟି ଦେ, ଆମ୍ମା ରୋଟି ଦେ'—ଆଃ, କି କରୁଣ ଦୃଶ୍ୟ ସେ ପିତୃମାତୃହରା ନିଶାହ ପିଲାଦୁଇଟିଙ୍କର । ମୁଁ ସେ କରୁଣ ଦୃଶ୍ୟ ଦେଖି କାନ୍ଦି ପକାଇଛି । ଆଉ କିଏ ଏପରି ପାଷାଣ ଅଛି ଯେ, ତାକୁ ଦେଖି ନ କାନ୍ଦିବ ? ମୋର ମନେ ହେଲା, ସତେ ଯେପରି ମୋର ଧନ ଦୌଲତ ସବୁ ତାଙ୍କୁହିଁ ଅଜାଡ଼ି ପକାନ୍ତି । ଏପରି ଚିତ୍ରକୁ ଥରେ କ'ଣ ମ, ଯେତେ ଦେଖିଲେ ତ ପୁଣି ଦେଖିବାକୁ ମନ ହେବ ।

ମାହାଲିଆ କଥା ଅଛି,
'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ,
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।'
ସ୍ୱାଙ୍କୁ ପଚିଶ ଥର ଦେଖିଲେ ତ ପୁଣି ଦେଖିବାକୁ ମନ ହେବ-ଅ !"

ମାଧବ ବାବୁ—"ହଁ, ଠିକ୍ କହିଛ । ଆଚ୍ଛା, ବର୍ତ୍ତମାନ ମୁଁ କହୁଛି, ଏ ଯେ ଗାଉଁଲି ବ୍ୟକ୍ତିଟି ତୁମ ସାମନାରେ ଅଛନ୍ତି ଏବଂ ତୁମ ସହିତ ଆଳାପ କରୁଛନ୍ତି, ତାଙ୍କ ଘରେ ପିଲାଟି ବେମାର ପଡ଼ିଛି । ପଥ୍ୟପାଚନକୁ ସମ୍ବଳ ନାହିଁ ବୋଲି ମୁଁ ଶୁଣି ପାରିଛି । ପିଲାଟିକୁ ବହୁଦିନ ହେଲା ଜର ହେଲାଣି । ଡେରି ହେଲେ କାଳେ କ'ଣ ହୋଇଯାଇ ପାରେ । ପ୍ରଚ୍ଛଦପଟରେ କାଲ୍ପନିକ ଗରିବ ପିଲାକୁ ଯାହା ଦେବ ତ ଜଣା ଅଛି, ଏବେ କିଛି ହେଲେ ଦେଲ । ବିଚରା ପିଲାଟି ହେଲେ ପ୍ରାଣ ପାଉ ।"

୭ମ ବ୍ୟକ୍ତି—"ମୋ ପାଖରେ ଧନ କାହିଁ ଯେ ? ମୋ ମନ ସେପରି ହେଲା ବୋଲି କ'ଣ ସତେ ଦେବାର ଶକ୍ତି ମୋର ଅଛି କି ? ଯାହା ବା କିଛି ଅଛି, ତା' ତ ଏକା ସିନେମାକୁ ନିଅଣ୍ଟ ।"

୭ଷ୍ଟ ବ୍ୟକ୍ତି (ସହସା)—"ହେ ଭଗବାନ, ତୁ ହିଁ ସାହା । ବାବୁ, ମୁଁ ଯାଉଛି । ମୋ ମନଟା କାହିଁକି ବଡ଼ ବିକଳ ହେଲାଣି । ମୁଁ ଚଣ୍ଡାଳ ଆଜି କ'ଣ କରୁଥିଲି ? ପୁଅ ମୁହଁରୁ ଆଧାର ଛଡ଼ାଇ ସିନେମା ଦେଖି ଆସିଥିଲି ! ବାବୁ ! ଯାହାକୁ ଚୋର ବୋଲି କହୁଥିଲି, ମୋଠୁଁ ଟିକଟ୍‌ପାଇଁ ପଇସା ନେଇ ଠକି ପଳାଇଲା, ସେ ଚୋର ନୁହେଁ ବାବୁ, ସେ ସାକ୍ଷାତ୍ ଭଗବାନ୍ । ଭଗବାନ ଚୋର ରୂପରେ ଆସିଥିଲେ ମୋତେ ଶିକ୍ଷା ଦେବାକୁ ଏବଂ ସତେ ସେପରି କହିଗଲେ, 'ହୁସିଆର, ସିନେମା ବେଶ୍ୟା ଓ ଠକେଇର ସ୍ଥାନ । କାଳେ କାଳେ ଏଠି ଗୋଡ଼ ଦେବୁନିଟି' ।

ବାବୁ, କି ଭାଗ୍ୟ ମୋର ! ତୁମ ସହିତ ଭେଟ ହେଲା । ମୋ ମନରେ ମୋ ପୁଅ କଥା ଖାଲି ନାଚି ଯାଉଛି । ଆଉ ଦଣ୍ଡେ ରହିପାରୁନି, ବାବୁ ।"

( ଏହା କହି ନମସ୍କାର କରି ଉଭୟ ପ୍ରସ୍ଥାନ କଲେ)

ମାଧବ ବାବୁ—"ଆହେ ବାବୁ, ତମର ପିଲାପାଇଁ ମୁଁ ସମସ୍ତ ବ୍ୟବସ୍ଥା କରିଦେବି, ବ୍ୟସ୍ତ ହୁଅନାହିଁ । ଆମ ଗାଁରେ ଭଲ କବିରାଜ ଜଣେ ଅଛନ୍ତି, ତାଙ୍କୁ ନେଇଯିବା । ସେ ବି ସାଙ୍ଗରେ ଔଷଧି ଏତେ ନିଅନ୍ତି ନାହିଁ । ଯେଉଁଠାକୁ ଯା'ନ୍ତି, ସେଠୁ କେତେ ଚେରମୂଳି ସଙ୍ଗେ ସଙ୍ଗେ ଯୋଗାଡ଼ିଆଣି ଅତି କଠିନ ରୋଗ ମଧ୍ୟ ଭଲ କରି ଦିଅନ୍ତି । ଯୂଷ ଛଡ଼ା, ଖାଲି ପାଣିରେ ସବୁ ରୋଗ ଯେ ଭଲହୁଏ, ତା'ବି ଶୁଣିବାକୁ ପାଉଛି ! ହଉ, ମୁଁ ତୁମ ପିଲାର ଭାର ନେଲି । ତୁମେ ବ୍ୟସ୍ତ ହୁଅନି । ହଉ ଚାଲ, ମୁଁ ବି ଯାଉଛି ।"

( ଏହା କହି ମାଧବ ବାବୁ ଓ ୭ମ ବ୍ୟକ୍ତି ଉଭୟଙ୍କର ପ୍ରସ୍ଥାନ )

୮ମ ବ୍ୟକ୍ତି —(୭ମ ଆଡ଼କୁ) "ଏ ବାବୁ ଯାହା କହିଲେ, ଶୁଣିଲଟି ? ସତେ ମ, ଆମେ ସେ ପିଲା ଦୁଇଟିଙ୍କର କରୁଣ କ୍ରନ୍ଦନରେ ଏତେ ବିଭୋର ହେଲୁ ଆଉ କାନ୍ଦିଲୁ ସତ, ଅଥଚ ବାସ୍ତବ କ୍ଷେତ୍ରକୁ ତା'ର ନିଦର୍ଶନ ସାମାନ୍ୟ ମାତ୍ର ବି ରହୁନି । ସେଦିନ 'ସଂସାର' ଦେଖି ସାରିବା ପରେ ଯେତେବେଳେ ଘରକୁ ଫେରେ, ମୋତେ କେତେ କାକୁତି ମିନତି କରି ଗୋଟିଏ ଗ୍ଲେଟା ପୁଣି ଅନ୍ଧ ମାଗିଲା, ମାତ୍ର ପଇସାଟିଏ । କିନ୍ତୁ ଆଜି ଥରେ ସଂସାର ଦେଖିବାର ଇଚ୍ଛା ଏତେ ପ୍ରବଳ ହେଲା ଯେ, ପଇସା କାଲେ ନିଅଣ୍ଟ ହୋଇଯିବ, ଏହି ଭୟରେ ମୋର ମନ ଆଦୌ ହେଲା ନାହିଁ ଏକ କପର୍ଦ୍ଦକ ବି ଦେବାପାଇଁ ।"

୭ମ ବ୍ୟକ୍ତି—"ହଁ ଭାଇ, ଆଜ ବଡ଼ ସୌଭାଗ୍ୟ—ଏପରି ମହାତ୍ମାଙ୍କ ସହିତ ସାକ୍ଷାତ ହେଲା । ସେଦିନ 'ସତୀ ଅନସୂୟା' ଦେଖି ଯାଇଥିଲେ ମୋର ବାପା ଆଉ ମା । ମୁଁ ବି ତାଙ୍କ ସଙ୍ଗେ ଯାଇଥିଲି । ବାପା, ମା ଆଉ ମୁଁ ସମସ୍ତେ ଅଭିଭୂତ ହୋଇଗଲୁ ଏବଂ ବେଳେବେଳେ କାନ୍ଦ ପକାଇଲୁ । କିନ୍ତୁ ସେଦିନ କ'ଣ ହେଲା ଜାଣିଛ ?"

୮ମ ବ୍ୟକ୍ତି—"କଣ ହେଲା, ଘରେ ରାମରାବଣ ଯୁଦ୍ଧ କି ?"

୭ମ ବ୍ୟକ୍ତି—"ହଁ ଭାଇ, ଠିକ୍ ସେଇଆ । ବାପା ଜିଗର କଲେ ତାଙ୍କ ମୁଣ୍ଡ ଚିପିଦେବାକୁ, ତା ପୁଣି ମାଙ୍କ ହାତରେ କରାଇବାକୁ । କିନ୍ତୁ ମା 'ବାଧା ଲାଗୁଛି' ଏହି ଆଳରେ ତାହା ପାଳିଲେ ନାହିଁ । ଫଳରେ ରୁଷାରୁଷି, ରାତିରେ ଖାଇବାପିଇବା ବନ୍ଦ, ଆମର ବି । ଏହି ତ ଫଳ ସିନେମାର !"

୮ମ ବ୍ୟକ୍ତି—"ଆରେ, ସିନେମାରୁ ଯାହା ଶିକ୍ଷା ମିଳିବା କଥା କୁହାଯାଇଛି, ତା ମିଥ୍ୟା ନୁହେଁ । କଥାରେ ଅଛି, ହଂସ ଦୁଧ ଖାଇ ପାଣି ଫୋପାଡ଼ି ଦିଏ, ମାତ୍ର ଆମପାଇଁ ସିନେମା ଠିକ୍ ଓଲଟା ଫଳ ଦେଉଛି । ଆମେ ଖାଲି ଯେତେକ ଖରାପ ଗୁଣ ସେତକ ଶିଖୁଛୁ, ଭଲ ବେଳକୁ ଆଖି ବନ୍ଦ ।

୭ମ ବ୍ୟକ୍ତି—"ଆମେ ଏ ବିଷୟରେ ଆନ୍ଦୋଳନ କରିବା । ଏ ସିନେମା ଆମର ସର୍ବନାଶ କରୁଛି ।"

(ଏତିକବେଳେ ଆହୁରି ୭।୮ ଜଣ ଜୁଟିଗଲେ) ସେମାନେ ସମସ୍ତେ—"ହଁ, ଆମର ସର୍ବନାଶ କରୁଛି ଏ ସିନେମା । ଆମ ପିଲାଙ୍କୁ ବିପଥଗାମୀ କରାଉଛି । ଯାର ପ୍ରତିକାର ଲୋଡ଼ା ।"

୭ମ ବ୍ୟକ୍ତି—"ଚାଲ, ଆନ୍ଦୋଳନ କର ଏବଂ ପ୍ରଚାର କର,

'ସିନେମା ଏ ଦେଶରୁ ଯାଉ' ଏବଂ ସ୍ଲୋଗାନ ଦିଅ, 'ସିନେମା ଯାଉଛି ଏଥର ଦେଶକୁ, ଲୋକେ ଜାଣ ଏହା କାଳକାଳକୁ ।"

(ଏପରି ସ୍ଲୋଗାନ୍ ଦେଇ ସମସ୍ତଙ୍କର ପ୍ରସ୍ଥାନ ।)

---

# କୁଟି ଖାଅ

"ଆରେ ରଇଥ ମ, ମୋର ଅଳପ ଗଣ୍ଡେ ଅଛି । ମୋଟେ ଟିଣେ କ ଦି ଟିଣ ; ତୁମର ତ ଦି'ବସ୍ତା ! ମୋ ପରେ କୁଟେଇଲେ ହେବନି ?" ଜଣେ କହିଲା ବେଳକୁ, ଆଉ ଜଣେ ଆଗରେ ଥାଇ କହୁଛି, "ଆରେ ଯାହା ପରେ ଯିଏ ନା, ଆମେ ସବୁ ଧାଡ଼ି ଧରି ଘଣ୍ଟେ ହେବ ଛିଡ଼ା ହୋଇଛୁ କ'ଣ ତୁମର ଦି'ଟିଣ ଧାନ କୁଟା ହେବା ପାଇଁ ? ଏ କଣ ରେଲଗାଡ଼ି ନିୟମ ହୋଇଛି କି ? ଯେ ପଛରେ ଆସିବ ସେ ଆଗ ଯିବ ? ତୁମର ଟିଣକ ତୁମକୁ ଯେତିକି ଆମର ବସ୍ତା ଦୁଇଟି ଆମକୁ ସେତିକି । ପଛରେ ତ ଆସିଛ, ଟିକିଏ ବସ—ଅ ।"

ଆଉ ଜଣେ କହୁଛି, "ଆରେ କିଏ କାହାକୁ ଛାଡ଼ି ଦେଲାଣି ଏ ଯୁଗରେ ? ତୁମର ଦି'ବସ୍ତାକ ପରେ ମୋ ପାଳି ମ, ମୁଁ କ'ଣ ନିଆଁରେ ମୁତିଛି କି ? ମୋର ଶଗଡ଼ରେ ଧାନ ଥୁଆ ହେଲାଣି କେତେ ବେଳୁଁ ! ଯାହାର ଅଳ୍ପ ସେ କ'ଣ ସୁନାପୁଅ ପରି ପଛରେ

ଆସି ଆଗ ଚାଲିଯିବ ? ଆଜି ଆମେ କି ପାପ କଲୁଁ କି ? କେତେ ବେଳୁଁ ଧାରଣା ଦେଇଛୁଣି ସେ କଥା କ'ଣ ପୁଅ ସାଆନ୍ତଙ୍କୁ ମାଲୁମ୍ ନାହିଁ କି ? ତିଣେ ଦୁ'ତିଣ ବୋଲି ଆଗ ଚାଲିଯିବେ ? ଦେଖିବା ତ କମିତି ଆଗ ତାଙ୍କର ହେବ । ଆମ ଆଗ ବାଲିଙ୍କର ଆଗ ଯେବେ ନ ହୁଏ ତେବେ ନ ହେଉ ଏ କଳ, କଳ କ'ଣ ଅଭାବ ହୋଇଛି କି ? ଆମର ଶଗଡ଼େ ଧାନକୁଣ୍ଡା ହୋଇଥିଲେ କ'ଣ ମାଗଣା ହୁଅନ୍ତା ? ହକ ନଗଦ ପଇସା ଠଣ୍ ଠାଣ୍ ଦିଆ ହେବ । ତାଙ୍କ ଦୁ'ତିଣରୁ ବେଶି ପାଇବେ ନା ଆମଠୁଁ ବେଶି ପାଇବେ ମ ?"

ଏତିକି କହୁ କହୁ ହଠାତ୍ କାରଖାନା ଭିତରୁ କଳ ମାଲିକ କହିଲେ, "ଯେ ଆଗ ଆସିଛି ତା କାମ ଆଗ ହେବା ହେଲା ଏ କଳର ନିୟମ ।"

ଏତିକରେ ସମସ୍ତେ ଚୁନ୍ ଚାନ୍ ।

କଳ ଚାଲିଛି ଖୁବ୍ ବେଗରେ, ସତେ ଯେପରି ମେଲ୍ ଗାଡ଼ି । ମାରୁଆଡ଼ି ପୁଅ ପଇସା ଗୋଟାଇବାରେ ଲାଗିଛି । ଲୋକ ଧାଡ଼ି ଲାଗିଛନ୍ତି । ଧାଡ଼ି କମି ଆସିବା ବେଳକୁ ପୁଣି ଲୋକ ଆସି ପଛରୁ ଜମୁଛନ୍ତି । କିଏ ଘଣ୍ଟେ ହେବ କିଏ ବା ଦୁ'ଘଣ୍ଟା ହେବ ଛିଡ଼ା ହୋଇଛନ୍ତି, କେବେ ମାଲିକର ଶୁଭଦୃଷ୍ଟି ପଡ଼ିବ । ବେଳେ ବେଳେ ମାଲିକର ଆପଣାର ଲୋକ ଆସିଲେ ନିୟମ ଭଙ୍ଗ ହୋଇ ଆଗ ତା'ର କାମ ହୋଇଯାଉଛି । ସେତେବେଳକୁ ପାଟି ଫିଟାଇବାକୁ କାହାର ଦମ୍ଭ ବି ନାହିଁ । ସେ କଳର ନିର୍ମମ କର୍କଶ ଶବ୍ଦ ଆଗରେ ଜଣେ ଦୁ'ଜଣଙ୍କର ପାଟି ଏତେ ଆଉ କ'ଣ ଶୁଭୁଛି ? ଏତିକି ବେଳେ ଘଣ୍ଟାରେ ୬ଟା ହେଲା । କଳ ବନ୍ଦ ହୋଇଗଲା । କାମ କେତେକଙ୍କର ହେଲା ଆଉ କେତେକଙ୍କର ହୋଇ ପାରିଲା ନାହିଁ ।

କଳ ଭିତରେ ଯେଝାର ଧାନ ସାଇତି ଯେଝା ବାଟରେ ଯେ ଗଲେ । ଆଉ କେତେକ ଧାନ ଫେରସ୍ତ ନେଇଗଲେ । ବାଟରେ ଗଲାବେଳେ ପରସ୍ପର ମଧ୍ୟରେ ଆଲୋଚନା ହେଲା ।

ବଣି ମହାପାତ୍ର—"ଆରେ ମଦନା, ତୋ'ର ଧାନତକ ହୋଇ ପାରିଲା ନାହିଁ କରେ ?"

ମଦନ ପଧାନ—"ସାଆନ୍ତଙ୍କ ପରି ସମସ୍ତେ କ'ଣ ଭାଗ୍ୟବାନ୍ ?"

ବ· ମହାପାତ୍ର—"ଆରେ ନାଇଁରେ, ମୁଁ ସେ ମାରୁଆଡ଼ିର ପୁଅକୁ ପଢ଼ାଏ ବୋଲି ମୋତେ ଦଣ୍ଡେ ସେ ବସାଇ ଦିଏ ନାହିଁ । ଏପରି କି କାହାର ଧାନ ଯଦି ଆଗରୁ ପଡ଼ିଥାଏ, ତା'ର ମଝିରେ ବନ୍ଦ କରି ଦେଇ ମୋତେ ଆଗ ବିଦା କରିଦିଏ ।"

ମଦନ ପଧାନ, "ଆଜ୍ଞା, ମୋର ଛ ବସ୍ତା ଧାନ, ସେ କଳ ଭିତରେ ରଖି ଦେଇ ଆସିଛି, ଗୋଳ ହବନି ତ ?"

ବ: ମହାପାତ୍ର, "ସେ ମାରୁଆଡ଼ିର କ'ଣ ଅଭାବ ଅଛି ଯେ, ତୋ'ର ଧାନ ଗଣ୍ଡେ ଗୋଳ କରିବ ? ଏକଥା ତୁ କମିତି କହିଲୁ ?"

ମଦନ ପଧାନ—"ହଁ ବୁଝୁଛି ଯେ, କିନ୍ତୁ ପଧାନିଆଣୀ ମୋତେ ତ ରଖେଇ ଥୋଇ ଦବନି । ସେ ବାରବାର କହି କହେ, 'ହୁସିଆର, କଳବାଲାକୁ ବିଶ୍ୱାସ କରିବ ନାହିଁ ; ତା'ର ହୃଦୟ ନାହିଁ, ଧର୍ମ ଗରବ ବିଚାର ତା'ଠାରେ ନାହିଁ ; ତା'ର ଅସଲ ହେଲା ପଇସା ; ପଇସା ପାଇଁ ସବୁ କାମ ସେମାନେ କରିପାରନ୍ତି । ତେଣୁ ତୁମେ ଥାଇ ଧାନ କୁଟାଇବ । ଆଉ କୁଣ୍ଡା, ଗୁଣ୍ଡ ସବୁ

ନିଜେ ଥାଇ ଆଣିବ । ଧାନ କେଉଁଠି ରଖିଦେଇ ଆସିବନି ।' ଏବେ କରେ କଣ ?"

ବ: ମହାପାତ୍ର—"କଲ ତ ବନ୍ଦ ହୋଇଗଲା, ଧାନ ଆଉ ଫେରସ୍ତ ନେଲେ ଦୋହରା ଭଡ଼ା ପଡ଼ନ୍ତାନି ? ଚୋର୍ ଖାସା ଲାଭ ହୁଅନ୍ତା !"

ମଦନ ପଧାନ, "ମୁଁ ଠିକ୍ ସେଥି କାରଣରୁ ତ ଧାନ ଆଣିଲିନି । ମାତ୍ର ଯେତେ ବୁଝାଇଲେ କ'ଣ ପଧାନିଆଣୀ ତା ବୁଝିବ ?"

ବ: ମହାପାତ୍ର, "ଆଚ୍ଛା, ତୁ ଏବେ ବୁଝାଇବୁ, କଲ ତ ବନ୍ଦ ହେଲା, ଧାନ ରଖନ୍ତନି ତ ଆଉ କ'ଣ ଦୋହରା ଭଡ଼ା ଗଣନ୍ତ ? ଯା ପରେ ଯଦି ପଧାନିଆଣୀ ଫେର୍ ପାଟିଫାଟି କରେ, ତେବେ ତାକୁ ଧାନ କୁଟିବାକୁ କହିବୁ । ଧାନ କୁଟିବାର ଧମକ ଶୁଣିଲେ ମୋର ମନେ ହଉଛି ସେ ଭୁନି ପଡ଼ିବ ।"

ମଦନ ପଧାନ, "ମୁଁ କ'ଣ ସେକଥା ଆଗରୁ କହିନି ? ଥରେ କ'ଣ, ବହୁବାର କହିଛି ।"

ବ: ମହାପାତ୍ର, "ସେ କ'ଣ ଉତ୍ତର ଦିଏ ?"

ମ: ପଧାନ, "ସେ କହେ, 'ଏ କଲ ଯୁଗରେ କିଏ ଢିଙ୍କିରେ କୁଟୁଛି ଯେ ମୁଁ କୁଟିବି ?' ଏବେ ତ ଗାଁ ମଝିରେ ସବୁ ଧାନ କଲ ହେଲଣି, ଆଉ ଏତେ କଷ୍ଟ କରି ଧାନ କୁଟିବା କି ଲୋଡ଼ା ?"

ବ: ମହାପାତ୍ର, "ତେବେ ଯା', ଯାହା ତୋ' କପାଳରେ ଥିବ । ଗାଳି ହେବ ତ, ଟିକିଏ ପେଟିଆ ହୋଇଯିବୁ । ପୁଣି କାଲି ଗୁଉଳ, କୁଣ୍ଡା ନେଇ ଯିବା ପରେ ପଧାନିଆଣୀ ସବୁ ଭୁଲି ଯିବନି କି ?"

ମ: ପଧାନ, "ସାଆନ୍ତେ, ତୁମେ ଗୋଟେ କଳ ବସାନ୍ତନି ? ତୁମଠି କ'ଣ ଆମର ଅବିଶ୍ୱାସ ଅଛି ? ଘର ଦୁଆର ମୁହଁରେ କଳ । ଆଉ ଚିନ୍ତା କ'ଣ ? ଏ ଢେଙ୍କି ଯାଇଛି ଯେ ଲୋକ ବାଞ୍ଚି ପାଇଛି । ଏତିକ ପରିଶ୍ରମ ! ଘଣ୍ଟା ଘଣ୍ଟା ଧରି କୁଟୁ'ଥା । ଆରେ କଳରେ ପକାଅ ପକାଅ ଗୁଡ଼ଉଳ, ପୁଣି ଗୁଡ଼ଉଳ ଗୋଟେ ପଟେ ତ କୁଣ୍ଡା ଆସିଲାଣି ଆଉ ଗୋଟେ ପଟେ । ଲୋକଙ୍କର ସୁବିଧା ନ ହେଉଥିଲେ ମାହାଳିଆ ଏ କଳ ଆସିଥାନ୍ତା ? ଲୋକେ କ'ଣ ଏଡ଼ିକ ଓଲି ଆଉ ପଧାନିଆଣୀ କଥା କ'ଣ ଏଡ଼ିକ ନାକରି ଯେ ଠିଙ୍କି ଅଡ଼ୁଆ ଲାଗନ୍ତା ?"

ଷ: ମହାପାତ୍ରେ, "ଯାହା କହିଲୁ ସେ ବିଷୟରେ ବହୁଥର ଭାବିଛି । କିନ୍ତୁ ଉପାୟ ପାଉନି । ଆରେ ସେ ମାରୁଆଡ଼ି ଟୋକାକୁ ମୁଁ ଦେଖିଛି । ଆସିବା ବେଳେ ଖାଲି ଲୋଟାଟେ ଆଉ କମ୍ବଳ ଖଣ୍ଡେ ନେଇ ଆସିଥିଲା । କେଉଁ ମାରୁଆଡ଼ି ଭାଇଠୁଁ କିଛି କରଜ ଆଣି ଖଣ୍ଡେ କଳ ବସାଇଲା ଯେ ଏବେ ବର୍ଷ ତିନିଟା ଭିତରେ କରଜ ସବୁ ପରିଶୋଧ କରି ତା ଗୋଡ଼ରେ ସେ ଛିଡ଼ା ହେଲାଣି । କଳରୁ ଏତିକ ଲାଭ, ଜାଣିଲୁ ? ଭାବୁଛି, କେଉଁଠୁ କରଜ ନ ପାଇଲେ ମୋର ଜମିବାଡ଼ି ବିକିବି ପଛେ, ଗୋଟିଏ କଳ ଏ ଗାଁ ମଝିରେ ନିଶ୍ଚୟ ବସାଇବି । ୩।୪ ବର୍ଷ ପରେ ମତେ ଦେଖିବୁ । ପୁଣି କେତେ ଜମି କରିନେବି । ଗାଁ ଘର କୋଠାରେ ପରିଣତ ହେବ । ହବ ତ ଆଉ ଯୋଡ଼େ କି ତିନିଟା କଳ ଭିନ୍ନ ଭିନ୍ନ ଜାଗାରେ ବସାଇବି ।"

ମ: ପଧାନ, "ସତେ ସାଆନ୍ତେ, କଳରେ ଏତିକ ଲାଭ ? କଳ କିଣିବାରେ ଆଉ ବସାଇବାରେ ତ କେତେ ଖରଚ ହେଉଥିବ ? ପୁଣି ମଝିରେ ମଝିରେ ବିଗିଡ଼ିଲେ ମରାମତିରେ କେତେ

ଯାଉଥିବ ? ଚଳାଇବାରେ ଖର୍ଚ୍ଚ, ପୁଣି ମୂଲଆ ଯେ କେତେ ଅଛନ୍ତି, ସେମାନେ ତ ମାଗଣା ନ ଥିବେ ?"

ବା: ମହାପାତ୍ର, "ଏ ସବୁ ସତ୍ତ୍ୱେ ବି ଲାଭ ବହୁତ । ଆଗେ ଧାନ କୁଟିବାକୁ କୁଟୁଣୀମାନେ ଥିଲେ । ସେମାନେ ଢିଙ୍କିରେ କୁଟି ଯେ ରୋଜଗାର ପାଉଥିଲେ ସେଥିରେ ଚଳିଯାଉଥିଲେ । ଆଜ ଯୀ ଘରେ କୁଟା ତ କାଲି ତା ଘରେ, ଏପରି ଭାବରେ ତାଙ୍କୁ କାମ ଛୁଟୁ ନ ଥିଲା । ସେମାନେ କେବଳ ଏହି ଧାନ କୁଟା ଉପରେ ନିର୍ଭରକରି ବେଶ୍ ଆନନ୍ଦରେ ଚଳି ଯାଉଥିଲେ ।"

ମଦନ ପଧାନ, "ମୁଁ କ'ଣ ତା ଜାଣିନି ? ମୋ ପଧାନିଆଣୀ ତ କେତେ ଥର ଯାଇଛି । ଏ ଗାଁରେ ଘର କେତେଟା ବା ହବ; ତଥାପି ୧୦।୧୨ ଜଣ ହେବ, କେବଳ ଧାନ କୁଟି ଭଲ ଭାବରେ ଚଳି ଯାଉଥିଲେ ।"

ବା: ମହାପାତ୍ର, "ଆଉ ସେମାନଙ୍କର ଦେହ ମେହନତ କରିବା ଫଳରେ ଚେହେରା ତାଙ୍କର ଦେଖିଚୁଟି ? କମିତି ବପୁ ! ଆମେ ତ ଟିକିଏ କାମ କରି ପକାଇଲେ ଧକେଇବା, କିନ୍ତୁ ସେମାନେ କେତେ କାମ କରନ୍ତି ! ତାଙ୍କର କାମ କରିବାକୁ ଆଗ୍ରହ ଯେମିତି ବଳ ବି କମାଇଥିଲେ ସେମିତି ।"

ମଦନ ପଧାନ, "ଏବେ କିନ୍ତୁ ତାଙ୍କର କୁଟି ମଲାଣି ସାଆନ୍ତେ ! ମରନ୍ତୁ, ମୋ ପଧାନିଆଣୀ ସଙ୍ଗେ ହାଠଣୁ କଳି କରିବେ । ସେମାନେ ତ ମରିବେନି ଆଉ ମରିବ କିଏ ମ ? ଆଉ ତ ଧନ୍ଦା ନାହିଁ । ଏ ତ କଳର ଯୁଗ । ଯୁଗକୁ ନେଇ କ'ଣ ପଛେଇ ଦବ ? ସବୁ ତ କଳରେ ହେଲା । ଯୁଠି ଶହେ ଜଣ କାମ କଲେ ଯାହା ହେଉଥିଲା ସେଠି ଜଣେ ଲୋକ କଳଟିଏ ଚଳାଇଲେ କାମ ହେଲା । ସେଗୁଡ଼ାକ କାମ ନ ପାଇ ମଲେ,

ଭଲ ହେଲା । ଏବେ ଘର ଦିନରେ ଓଳିଏ ଖାଇବାକୁ ପାଉ-ନାହାନ୍ତି । କେତେକ ଗାଁ ଛାଡ଼ି ପଳାଇଲେଣି । ଶୁଣୁଛି, ହୀନ କାର୍ଯ୍ୟ ମଧ୍ୟ କେତେକ କରୁଛନ୍ତି ।"

ନ: ମହାପାତ୍ର, "ହଇହୋ ପଧାନେ, ତୁମ ଘର ପାଖରେ ସେ ଯୁ ଦି'ଜଣ ମାଇପି ନ ଥିଲେ, ଆଃ ମନେ ପଡ଼ୁନି ମ' ନାଁ-ଆ-ଟା, ହେଇଟି ଜଭ ଅଗରେ ଅଛିଟି, କେତେଥର ଆମ ଘରକୁ ଧାନକୁଟି ଆସିଛନ୍ତି ।"

ମ: ପଧାନ, "ହଁ ସାଆନ୍ତେ, ଭୁଲି ଯାଇଛନ୍ତି ଭଲ ହୋଇଛି । ସେ ଦୁହେଁ ଏବେ କଟକରେ ମାଗି ଖାଉଛନ୍ତି । ଦିନାକେତେ ସକାଳୁ ପାହାଡ଼ ଉପରକୁ ଝାଟି ଗୋଟେଇ ଯାନ୍ତି ଯେ ସନ୍ଧ୍ୟା ବେଳକୁ ଫେରନ୍ତି, ପୁଳାଏ ଝାଟି ମୁଣ୍ଡେଇ । ସେଥିରେ କ'ଣ ଗୁଜରାଣ ମେଣ୍ଟେ ? ଏବେ ଯାଠୁ ତାଠୁ ମାଗି ବୁଲୁଛନ୍ତି । ଅଇଁଠା ପତ୍ର ଘଷୁଛନ୍ତି । ଦେହରେ ଲୁଗା ଥିଲା ନ ଥିଲା ପରି । ଭଲ ହୋଇଛି । ଛତରଖାଇଗୁଡ଼ାକ ସ୍ୱାଙ୍କର ଏତେ ଦିମାକ ଯେ ମୋ ପଧାନିଆଣୀ ସହିତ ହଠୁଣୁ କଲେ ! ଧାନ କୁଟି ମୁଠେ ପାଉଥିଲେ, ଚେରଉଥିଲେ, ଏବେ ଗଲା, କୁଟି ମଲା । କଳ ଆସିଛି ଭଲ ହୋଇଛି । ଗାଁରୁ କେଉଁଟା ଅରକ୍ଷିତଆଣୀ ଲୋପ ତ ହେଲେ "!

ଦ: ମହାପାତ୍ର, "ଆମ ଘର ପାଖରେ ବି ଅରକ୍ଷିତଆଣୀଟେ ଅଛି । ଆମ ଧାନ କୁଟିବାକୁ ଆସୁଥିଲା । ଏବେ ଦିନାକେତେ କୁଟା ତ ବନ୍ଦ ଅଛି । ଆସ୍ତୁର ପନ୍ଥା ତ ବନ୍ଦ, ଆଉ ଯାହା ବା ପନ୍ଥା କରନ୍ତା, ସେ ସବୁ ତ କାଳ ନେଇଗଲା, ଏବେ ନିରୁପାୟ ହୋଇ ଚେରି କରୁଛି । ତା'ର ଗୋଟାଏ ପୁଅ ଓସ୍ତାଦ୍ ଚୋର ପାଲଟିଛି ଯେ, ମୋତେ ନିତି ଡର ମାଡ଼ୁଛି । ତା ଯୋଗୁ ମୋତେ ରାତିରେ

ନିଦ ନାହିଁ । ଟିକିଏ ଧଡ଼୍‌କିନା ଶବ୍ଦ ହେଲେ 'ଆଇଲା କରେ !' ଶୁଣିକିନା ନିଦ ଭାଙ୍ଗି ଯାଉଛି । ଓଷୁଅ ପରେ ଓଷୁଅ ଆସୁଛି, ନିଦ ହେବା ପାଇଁ, ଇମିତି ଓଷୁଅ କେତେ ଖାଇଲିଣି, କିନ୍ତୁ ଏ ଦିନକାଳରେ ତ ନିଦ ଆସୁନି । ଆରେ ନିଦ ନ ହେଲେ କି ସ୍ୱାସ୍ଥ୍ୟ ରହିବ !"

ମ: ପଧାନ, "ସେ କଥା କହୁନ ! ମୁଁ କାବା ହଉଛି । ସଆନ୍ତଙ୍କର ଅଭାବ ବା କ'ଣ ? ହିନାକେତେ ପୂର୍ବରୁ କେଡ଼େ ସୁନ୍ଦର ଦେହ ଥିଲା । ଏବେ ସେ ଦେହ କାହିଁ ! ଆମର କିଛି ନ ଥାଇ ବି ଆମେ ଫୁଲୁଛୁ ! ସାଆନ୍ତଙ୍କୁ ଏବେ କାଳ ହେଲା ସେ ପୁରୁଣା କୁଟୁଚୁଣୀଟା ! ଆଚ୍ଛା, ତାକୁ ହଟାଇ ଦଉନାହାନ୍ତି ।"

ବ: ମହାପାତ୍ର, "ପଧାନେ, ତୁମେ ଏ ଗାଁର ନ୍ୟାୟ ଜାଣିନ କି ? ଆମପରି କେତେକ ଭଦ୍ରଲୋକ ଚୋରି ପାଲିଟିଛନ୍ତି । ଏ ଭଦ୍ରଲୋକ ଚୋରି କରୁଛନ୍ତି, ଧରା ହେବା ବେଳକୁ ସେ କୁଟୁଚୁଣୀ ପୁଅ ନାଁ ହଉଛି । ତା ପୁଅ ଜେଲ୍ ଯାଏ । ଏଣେ କୁଟୁଚୁଣୀ ସେ ଭଦ୍ରଚୋରଙ୍କଠୁଁ କିଛି ଗଣ୍ଡେ ପାଇ ଚଳିଯାଏ । ସେ ଟୋକା ବି ମାନିଯାଏ । ତାର କଣ ଲୋକସାନ ହେଲା କି ? ଏଣେ ଘରେ ଥିଲେ ତ ଖାଇବା ଚିନ୍ତା ଥାନ୍ତା, ଜେଲ୍ ଗଲେ ସେତକ ବି ଗଲା । ପୁଣି ତା ମା' ବି ଆମପରି ଭଦ୍ରବେଶୀ ଚୋରଙ୍କଠୁଁ ବେଶ୍ କିଛି ପାଏ । ତେଣୁ ସେ ତ ଗାଁରେ ରହିଲେ ଭଦ୍ରଚୋରଙ୍କୁ ମାହେନ୍ଦ୍ର ଯୋଗ । ମୁଁ ତଡ଼ିବାକୁ ଚେଷ୍ଟା କଲେ କ'ଣ ହେବ ? ଅରକ୍ଷିତକୁ ଦାଇବ ସାହା ହେବାପରି ତାକୁ ତ ଏ ଭଦ୍ରଚୋରସବୁ ଘଣ୍ଟି ଘୋଡାଇ ରଖିଛନ୍ତି ।"

ମ: ପଧାନ, "ତେବେ ତ ବଡ଼ ଅଡ଼ୁଆ ପରିସ୍ଥିତି ହେଲା । ଆପଣ ତ ବଡ଼ ଦୁଃଖରେ ଚଳୁଥିବେ !"

ବ: ମହାପାତ୍ର, "ଖାଲି କଣ ସେତିକ ? ତମ ଘରକୁ ଯେ'ଘର ଗୁଡ଼, ସେ ବମଳ କୋଉ ଘରକୁ, ମୋ ପିଲେ ସବୁଦିନ ସକାଳୁ ଯାନ୍ତି ଭୂଜା ଆଣି । ତା ଘର ମୁଢ଼ି ବଡ଼ ଭଲ ଲାଗେ । ସେ ତ ଆଗେ ଧାନ କୁଟୁଥିଲା ଜାଣ ।"

ମ: ପଧାନ, "ମଲି ମୁଁ ଜାଣିନି ? ମୋ ପଧାନିଆଣୀର ବଡ଼ ସାଙ୍ଗ । କେତେବାର ସାଥି ହୋଇ ଯାଇଛନ୍ତି ଧାନ କୁଟି । ସେ ବ ଆସିଛି ଆମ ଘରକୁ । ଆମ ପଧାନିଆଣୀ ବ ଯାଇଛି କେତେଥର ତା ଘରକୁ । ତା କଥା କାହିଁକି ପଡ଼ିଲା ସାଆନ୍ତେ ?"

ବ: ମହାପାତ୍ର, "ଧାନକଳ ଆସିବା ଦିନୁଁ ତା'ର କୁଟି ମଲା । ଆଉ ତ ରୋଜଗାରର ପନ୍ଥା ନାହିଁ । ମୁଢ଼ି ଭଜୁଛି । ଆରେ, ମୁଢ଼ି ଭଜିଲେ କ'ଣ ଗୁଜୁରାଣ ମେଣ୍ଟିବ ? ସେ ତ ଗୁଡ଼ିଆ ନୁହେଁ ଯେ ସେ ବ୍ୟବସାୟରେ ପୋଷି ହେବ । ଏବେ ଖାଇବାକୁ ନ ପାଇ ତା ଘରେ ଜଣକୁ ହୋଇଛି ଯକ୍ଷ୍ମା, ତାକୁ ହୋଇଛି କୁଷ୍ଠ, ଆଉ ସବୁ ପିଲେ ମୁର୍ଦ୍ଦାର ପରି ଦିଶୁଛନ୍ତି । ତଥାପି ମୋ ପିଲେ ଲଗାଇଛନ୍ତି, ତା'ଘରୁ ମୁଢ଼ି ନ ଆଣିଲେ ହବନି । ମୁଁ କରେ କ'ଣ ? ସେ ରୋଗିଣୀ ପିଲାଗୁଡ଼ାକ ଆସି ହଠୁଣୁ ମୋ ପିଲାଙ୍କ ସହିତ ଖେଳିବାକୁ ହଉଛନ୍ତି । ମୁଁ ଥରେ ଦିଥର ହଗା ଲଗା ମାଡ଼ ଚଢ଼ାଇବା ପରଠୁଁ ଆଉ ଆସୁ ନାହାନ୍ତି । ତଥାପି ମୋର ବାବୁଲଟା ହଠୁଣୁ କହୁଛି, 'ନନା, ସେ ମୁଢ଼ିବାଲି ପୁଅକୁ ତୁମେ ମାଇଲ କାହିଁକି ?' ଏହା କହି ତା ଆଖି ଛଳ ଛଳ ହୋଇ ଯାଉଛି । ପୁଣି କହୁଛି, 'ନନା, ମୁଁ ସେ ମୁଢ଼ିବାଲି ପୁଅ ସଙ୍ଗେ 'ଓସକା' ବସିବ । ସେ ଭାରି ଭଲ ।' ଏପରି ଅନେକ କଥା କହୁଛି ।"

ମ. ପଧାନ, "ପିଲା ଲୋକ ପରା । ସେମାନେ କ'ଣ ରୋଗ ନା ଯୋଗ କଥା ବୁଝନ୍ତି ? ସେମାନେ ଯାହା ଖେଳିବାକୁ ଚାହୁଁଛନ୍ତି

ତେବେ ମନା କରିବାଟା କ'ଣ ଠିକ୍ ? ପିଲା ନାରାୟଣ । ତାଙ୍କୁ ହାତ ଉଠାଇ ମାରିବାଟା କ'ଣ ଭଲ ? ସାଆନ୍ତ କ'ଣ ଅଜାଣିବାରେ ଯେ, ମୁଁ ଗୋଟେ ଅଧିକ କହିବି ?"

ବା: ମହାପାତ୍ର, "ଆରେ ମଦନା, ତୁ କ'ଣ କହୁ ଜାଣିଲୁଣି ? ଡାକ୍ତର ସବୁ କହନ୍ତି, କୁଷ୍ଠ ଆଉ ଯକ୍ଷ୍ମା ଦୁଇଁ ରୋଗ, ଜଣକଠୁଁ ଅନ୍ୟ ଜଣଙ୍କ ପାଖକୁ ଡିଏଁ ବୋଲି ! ତା ପିଲାଙ୍କୁ ହୋଇଛି , ମୋ ପିଲା ସଙ୍ଗେ ଖେଳିଲେ ମୋ ପିଲାଙ୍କର ଯଦି ହେବ, ତେବେ ମୁଁ କରେ କଣ ? ସେ ଅସାଧ ରୋଗକୁ ମୁଁ କ'ଣ ପାରିବି ? ଭାବଛି, କଳ ବସାଇବି, ଧନ କମାଇବି । ଗୋଟେ କଳକୁ ୧୦।୧୨ ଗାଁର ଧାନ ଆସିବଟି ! ପ୍ରତି ଗାଁର ୧୦।୧୨ ଜଣ କୁଟିଭୁଣୀ ଯେଉଁ ପଇସା ଚାଉଳ ଆକାରରେ ପାଆନ୍ତେ, ମୁଁ ତାକୁ କଞ୍ଚା ପଇସା ଆକାରରେ ପାଇବି । ଇମିତି ୧୦୦।୧୨୦ କୁଟିଭୁଣୀଙ୍କର ଆୟୁ ମୋ ଘରକୁ ଆସିବ । ସେଥିରୁ କଳ କଣିବାରେ ବିଦେଶକୁ କମ୍ପା ମିଲ୍‌ମାଲିକପାଖକୁ କେତେ ଯିବ ଯାଉ । ମୂଳଆ ଗୋଟେ କ ଯୋଡ଼େ ହେଲେ ଚଳିଯିବ । ସେମାନେ ବା କେତେ ନେବେ ? ବାକୀ ସବୁତକ ତ ମୋର । ଇମିତି ସେ ମାରୁଆଡ଼ିକୁ କମିତି ଠିପିବ ମନରେ ଭାବଛି । ମାତ୍ର ମୋର ଗୋଟେ ପିଲା ଯଦି ଇମିତି କଚ୍ଛି ବେମାରିରେ ପଡ଼େ, ତେବେ ତ ମୋର ସବୁ ଧନ ତାର ପିଛୁ ଉଡ଼ିଯିବ ! ତା ସହିତ ସବୁ ସୁଖଶାନ୍ତି ମଧ ସମୂଳେ ଯିବରେ ମଦନା ! ତେବେ ମାଇଲି କ'ଣ ଅଧିକା ହେଲି ? ତଥାପି ଘରେ ଯୁ ମାଇପିମାନେ ଅଛନ୍ତି, ସେମାନେ କ'ଣ ଏତେ ବୁଝୁଛନ୍ତି ? ଯେତେବେଳେ ଇଚ୍ଛା ସେତେବେଳେ ବାଡ଼ିପଟେ ପିଲାଙ୍କୁ ପଠାଇ ତା'ର ଘରୁ ଭୂଜା ନ ଆଣିଲେ ମନ ବୁଝୁନି । ମୁଁ ଏବେ କରେ କ'ଣ ?"

ମ: ପଧାନ, "ସତରେ ସାଆନ୍ତ, ସେଗୁଡ଼ାକ ତଆଁ ରୋଗ ! ମୋର ପଧାନିଆଣୀ କ'ଣ ଜାଣି ତା ଘରକୁ ଯାଏ ! ତା ପାଖରେ ବସା ଉଠା କରେ ! ମୋ ପିଲେ ତା ପିଲଙ୍କ ସଙ୍ଗତ ଖେଳନ୍ତି ! ତୁମକୁ ତ ଉପାୟ ଅଛି, ଆଜ ଏଠି ଅଛ, କାଲି ଅନ୍ୟ କୁଆଡ଼େ ବ୍ୟସ୍ଥା କରିବ, ମୁଁ ଏବେ କରେ କ'ଣ ? ମୋ ଘରକୁ ଲଗିକରି ତା ଘର । ଏବେ ମୋ ମୁଣ୍ଡଟା ତ ଘୂରିଗଲାଣି । ମୋ ଘରକୁ ଲଗିକରି ଗୋଟାଏ କୋଢ଼ୀ ଆଉ ଯକ୍ଷ୍ମା ରୋଗୀ ! ସାଆନ୍ତ, କ'ଣ ଉପାୟ, ବତାଅ ! ମୋର ବୁଦ୍ଧି ତ ଏଥିକୁ ପାଉନି ।"

ବ: ମହାପାତ୍ର, "ଏକମାତ୍ର ଉପାୟ ଅଛି, ତାକୁ ଏଠାରୁ ନିକାଲିବା । ତେବେ ଯୁଆଡ଼େ ଯିବ, ଏ ରୋଗ ସେଠି ବି ବ୍ୟାପିବ । କିନ୍ତୁ ତାକୁ ଘଉଡ଼ୁଛି କିଏ ? ଏ ଗାଁର ମାଇପିଯାକଙ୍କର ତା ମୁଢ଼ି ହେଲା ପ୍ରିୟ । ମୋ ପିଲପରି ଏ ଗାଁର ଅନ୍ୟ ପିଲେ ତା ପିଲଙ୍କର ବଡ଼ ସାଙ୍ଗ । ତାକୁ ତଡ଼ିଲେ ଏ ପିଲଙ୍କର ଅଶାନ୍ତି, ଆଉ ମାଇପି ମହଲରେ ବି ଅଶାନ୍ତି । ପୁଣି ଗୋଟେ ଘରକୁ ଗାଁରୁ ଏହି କାରଣରୁ ତଡ଼ିଦେଲେ ଭଗବାନଙ୍କର ଚଡ଼କ ଆଉ ତା'ର ନିଶ୍ୱାସ ପୁଣି ତା ପିଲଙ୍କ ନିଶ୍ୱାସ ଯଦି ତଡ଼ିବା ଲୋକ ଉପରେ ପଡ଼େ, ଫଳରେ ତା ଘରେ ସେ ରୋଗ ଦେଖାଦିଏ ଏବଂ ତାକୁ ଯଦି ଗାଁରୁ ଠିକ୍ ସେହି କାରଣରୁ ବିଦା ହେବାକୁ ପଡ଼େ ତେବେ କ'ଣ ହେବ କହିଲୁ ? ଏମିତି କ'ଣ ସମସ୍ତେ ଏ ଗାଁରୁ ତଡ଼ା ହେବେ ? ତେବେ ଗାଁରେ ରହିବ କିଏରେ ? ତେଣୁ ଜଣକୁ ତଡ଼ିଦେଲେ କ'ଣ ସବୁ ଠିକ୍ ହୋଇଯିବ ଭାବିଛୁ ?"

ମ: ପଧାନ, "ତେବେ କମିତି ଚଳିବି ମୁଁ ସାଆନ୍ତେ ? ତୁମର ପଇସା ଅଛି, ବଳ ଅଛି, ସବୁକୁ ପ୍ରତିକାର କରିପାରିବ । ମୁଁ ଠାକା ଠାକା ମରିଯିବି ! ପଛକେ ପଧାନିଆଣୀ ମୋର

ନିଜେ ଧାନ କୁଟୁ, ମୋତେ ଏ ଭୟ ଆଉ ଏ ଦକା ନ ଘୋଟୁ । ମୋର ମନ ଦଣ୍ଡେ ଥୟ ଧରୁନି ସାଆନ୍ତ ।”

ବ: ମହାପାତ୍ର, “ତୋ ବୟସଠାରୁ ମୋର ବୟସ ଖୁବ ଅଧିକରେ ମଦନା । ତୋର ସିନା ଗୋଟାଏ ଭୟ, ମୋର କିନ୍ତୁ ଦୁଇଟି । ଏଣେ ରାତିରେ ଚୋର ଭୟ । ଚୋର ଭୟ କେବଳ ଯେ ମୋତେ ଗ୍ରାସିଛି ତା ନୁହେଁ, ମୋ ପିଲା ମାଇପ ସମସ୍ତଙ୍କୁ ବି । ରାତିରେ କ'ଣ ଗୋଟାଏ ଧଡ଼୍‌କିନା ଶବ୍ଦ ହେଲେ ପିଲାଗୁଡ଼ାକ “ଚୋର, ଚୋର” ବୋଲି ବିଲବିଲଉଛନ୍ତି ; ବେଳେ ବେଳେ ଛୋଟ ପିଲାଟା ଭୟରେ ଛୁନିଆଁ ହୋଇ କଲାକାଠ ପଡ଼ିଯାଉଛି । ତା ସାଙ୍ଗକୁ ପୁଣି ଏ ରୋଗ ଭୟ । ମୁଁ ଭାବୁଛି, ଏ ଗାଁ ଛାଡ଼ି ସହରକୁ ଚାଲିଯିବ ।”

ମା ପଧାନ, “ତୁମର ସିନା ବଳ ଅଛି, ଗାଁ ଛାଡ଼ି ସହରକୁ ଚାଲିଯିବ । ମାତ୍ର ମୋର ବଳ କ'ଣ ?”

ବ: ମହାପାତ୍ର “ଆରେ, ତୋତେ ସିନା ଇମିତି କହିଦେଲି । ମାତ୍ର ସହରରେ କ'ଣ ମୋତେ ନିସ୍ତାର ମିଳିବ କିରେ ? ଏ ଗାଁରେ ଚଳଣି କେଉଁ କାଳରୁ ହେଲଣି । କିଏ ବା ଆମର ଜଣା ନୁହନ୍ତି ? ତେଣୁ ଏଠି ଭୟ କମ୍ । ମାତ୍ର ସହରରେ ପଡ଼ିଶାଘର କଥା ବି କାହାକୁ ଜଣାନାହିଁ । କି ଅନିଶ୍ଚିତ ବାତାବରଣ ଭିତରେ ଚଳିବାକୁ ପଡ଼ିବ ! ଏଠି ସିନା ପିଲଙ୍କୁ ମନା କରିଦଉଛି, ‘ଯୁଆ ପାଖକୁ ଯାଅନି’ ‘ତାଠୁ କିଛି କିଣନି’ । ମାତ୍ର ସହରରେ ମୁଁ କାହାକୁ ବା ଜାଣେ ? କାହାକୁ ମନା କରିବି କହିଲୁ । ତେଣୁ ଗାଁଠାରୁ ସହରରେ ଏପ୍ରକାର ଭୟ ଅଧିକ ହେବ ସିନା ! ତୋ ମୁଣ୍ଡ କ'ଣ, ମୋ ମୁଣ୍ଡ ତ ଅଧିକ ଖରାପ ହେବାକୁ ବସିଲଣି । ଧାନକଳ ବସାଇବା ସ୍ୱପ୍ନ ଭାଙ୍ଗିବାକୁ ବସିଲଣି ରେ ମଦନା ।”

ମଦନ ପଧାନ, "ସାଆନ୍ତେ, ଏବେ କ'ଣ ଆଉ କିଛି ଉପାୟ ନାହିଁ ?"

ବ: ମହାପାତ୍ର, "ହଁ ଅଛି, ଗାଁବାଲା ଯଦି ସମସ୍ତେ ଇଚ୍ଛା କରନ୍ତେ ତେବେ ପୁଣି ବାତାବରଣ ବଦଳି ଯାନ୍ତା ।"

ମଦନ ପଧାନ, "କପରି ?"

ବ: ମହାପାତ୍ର, "ଗାଁରେ ଯେତକ ନିଃସ୍ୱ, ସମ୍ବଳହୀନ ତାଙ୍କୁ ଧନ୍ଦା ଦିଆଯାନ୍ତା ଆଉ ତାଙ୍କର ଧନ୍ଦାନିଃସୃତ ପଦାର୍ଥକୁ ଅମୃତ ମନେ କରି ସମସ୍ତେ ଗ୍ରହଣ କରନ୍ତେ, ଯଥାଯୋଗ୍ୟ ମୂଲ୍ୟ ବିନିମୟରେ । ତା ହେଲେ ଗାଁର ଧନ ଗାଁରେ ବାଣ୍ଟି କୁଣ୍ଟି ହୋଇ ରହନ୍ତା । କେହି ଭୋକିଲା ରହନ୍ତେନି । ସମସ୍ତେ ଗାଁଭ ପ୍ରକୃତିରାଣୀର କୋଳରେ ଖେଳି ବୁଲି ହସି ହସି ଦିନ କଟାନ୍ତେ ।"

ମ: ପଧାନ, "ତେବେ ତୁମେ କହିବା ଅନୁସାରେ ମାଟି ଓ କାଠ କଣ୍ଢେଇ, ଘଣାତେଲ, ଖଦଡ଼ ତନ୍ତଲୁଗା ଓ ଗାଁ ଗୁଡ଼ିଆ-ଠାରୁ ଜଳଖିଆ—ଏମାନଙ୍କର ବହୁଳ ପ୍ରଚଳନ ଫଳରେ ଗାଁର ଧନ ପଦାକୁ ଚାଲି ଯିବନି । ଗାଁରେ ନିଃସ୍ୱ ସମ୍ବଳହୀନ ବ୍ୟକ୍ତି କେହି ରହିବେନି ।"

ବ: ମହାପାତ୍ର, "ଠିକ୍ ଏହି ନୀତି ବଜାୟ ରହିଥିଲା ବୋଲି ବ୍ରିଟିଶ୍ ଆସିବା ଆଗରୁ ଏ ଦେଶ ଧନଧାନ୍ୟର ଚୂଡ଼ାନ୍ତରେ ଥିଲା । ଶିଳ୍ପ ସମୃଦ୍ଧିରେ ସାରା ପୃଥିବୀରେ ଶ୍ରେଷ୍ଠସ୍ଥାନ ଅଧିକାର କରିଥିଲା । ଭାରତର ଶିଳ୍ପପରିକାଷ୍ଠାରେ ଲୋଭେଇ ପାଶ୍ଚାତ୍ୟ ଦେଶର ଲୋକମାନେ ଦସ୍ୟୁଭାବରେ ଆସି ଭାରତମାତାର ବୁକୁରେ ଛୁରିକା ଭୂଷିଲେ । ସେମାନେ ଆମର ଗାଁର ଯେତେକ କାରିଗର, ତନ୍ତୀ, ବଢ଼େଇ, କମାର, ଆଉ ବିଖ୍ୟାତ ଶିଳ୍ପୀ ଅଛନ୍ତି, ତାଙ୍କ ହାତର ବୁଢ଼ାଆଙ୍ଗୁଳି କଟାଇ ଉପରି ଲୋଭ ଦେଖାଇ ଏ ଦେଶରୁ

ଶିଳ୍ପକୁ ବିନାଶ କଲେ । ପୁଣି ଏ ଦେଶର ସମୃଦ୍ଧି ଫେରାଇବାକୁ ହିଁ ପଡ଼ିବ ଏବଂ ସେଥିପାଇଁ ଗାଁର କୁଟୀରଶିଳ୍ପର ଉନ୍ନତି ଅବଶ୍ୟ କରିବାକୁ ହେବ ।"

ମ: ପ୍ରଧାନ, "ମଲା, ହବନି କାହିଁକି ? ସେହି ଦେଶ ତ ପଡ଼ିଛି । ସେହି ଲୋକ ଅଛନ୍ତି, ପାଣି ପବନ ତ ପୂର୍ବରୁ ଯେମିତି ଥିଲା ଏବେ ବି ସେମିତି ଅଛି । ତେବେ ଯେଉଁ ଉପାୟରେ ଏ ଦେଶ ସମସ୍ତଙ୍କ ଉପରେ ଥିଲା ଏବେ ସେପରି ହୋଇ ପାରିବନି କାହିଁକି ?"

ବି: ମହାପାତ୍ର, "ଠିକ୍ ସେହି କାରଣରୁ ମହାତ୍ମା ଗାନ୍ଧି ସ୍ୱଦେଶୀର ପ୍ରଚଳନ କରିଥିଲେ ଆଉ କଳ ବର୍ଜନ କରିଥିଲେ । କଳ ବହୁତ ଲୋକଙ୍କଠୁଁ କାମ ଛଡ଼ାଇ ସେମାନଙ୍କୁ ନିଃସ୍ୱ କରି ଅଳ୍ପ ଲୋକଙ୍କ ପାଖରେ ଧନ ପୁଞ୍ଜୀଭୂତ କରେ । ସେହି କାରଣରୁ ପ୍ଲାଷ୍ଟିକ୍ ଦ୍ରବ୍ୟ ଘୃଣ୍ୟ କିନ୍ତୁ ଗାଁର ଧନ୍ଦାଜାତ ଦ୍ରବ୍ୟ ଆଦରଣୀୟ । ଏ ପ୍ରକାର ମନୋବୃତ୍ତି ପ୍ରତ୍ୟେକଙ୍କର ହେବା ବାଞ୍ଛନୀୟ ।"

ମ· ପ୍ରଧାନ, "ସାଆନ୍ତେ, ଏ ସ୍ୱଦେଶୀ ବିଦେଶୀ ଖବର ଆଗରୁ ଶୁଣିଥିଲି । ଖଦଡ଼ ଓ ମିଲ୍ ବିଷୟରେ ଶୁଣିଛି । ମାତ୍ର ଖଦଡ଼ ତ ବଡ଼ ମହଙ୍ଗା, ମିଲ ଲୁଗା କେଡ଼େ ଶସ୍ତା ! ଆପଣଙ୍କ ପରି ଲୋକେ ସିନା ଖଦଡ଼ ପିନ୍ଧିବେ, ଗାଁ ଧନ୍ଦା ଜିନିଷ ମହରଗ ହେଉ ପଛେ କିଣିବେ, ମାତ୍ର ଆମ ପରି ଗରିବ ଲୋକେ ତ ମିଲ୍ ଲୁଗା ନ କିଣିଲେ ଚଳି ପାରିବେ ନାହିଁ । ସାମାନ୍ୟ ମାଟିର ଢିବିରି କଣ୍ଢେଇଟେ, ତା'ର ଦାମ୍ ହେବ ଚାରିଅଣା, ଅଥଚ ପ୍ଲାଷ୍ଟିକ୍ କଣ୍ଢେଇ ମିଳୁଛି, ଅଣାକୁ ଦୁ'ଅଣାକୁ, ପୁଣି ପଡ଼ିଲେ ଭାଙ୍ଗିବନି । ଆମେ କିମିତି ମାଟିକଣ୍ଢେଇ କିଣିବାକୁ ମନ କରିବୁ ? କୁଟୀରଶିଳ୍ପଜାତ ଜିନିଷ କିଣିବାକୁ ଆମର ତ ଧନ ନାହିଁ ।"

ବ· ମହାପାତ୍ର, "ନ କଣ । କଏ କଣିବାକୁ କହୁଚ କ ? ତେବେ ଇମିତ ଶସ୍ତା ପଛରେ ଯାଇ ଆମର ଦୁର୍ଦ୍ଦଶା ସିନା ବଢ଼ିଛି, କମି ଚ ନି । ନ ହେଲେ ତୋ ମୁଣ୍ଡ ଇମିତ ଘୁରନ୍ତା କାହିଁକି ?"

ମ· ପଧାନ, "ମୋତେ ଟିକିଏ ଭଲ କରି ବୁଝାଇ ଦିଅ । ମୂର୍ଖ ମୁଁ । ତମ କଥା ଭିତରେ ପଶି ପାରୁନି ।"

ବ· ମହାପାତ୍ର, "ଗାଁର ଦ୍ରବ୍ୟ ଆମେ କିଣିଲେ ପଇସା ପାଇବ କିଏ ?"

ମ· ପଧାନ, "ଗାଁ ଲୋକେ ।"

ବ· ମହାପାତ୍ର, "ସେମାନେ ଧନ ପାଇଲେ ସେମାନଙ୍କର ଉନ୍ନତି ହେବ । ଭଲ ଭାବରେ ଚଳିଲେ ରୋଗ ବୈରାଗ କମିବା ତ ନିଶ୍ଚିତ ; ହୁଏତ ସେ ସବୁ ଆଦୌ ଦେଖା ଦେଇ ନ ପାରେ । ପୁଣି ଭଲଭାବରେ ଚଳିପାରିଲେ ଯାହା କି କଠିନ ରୋଗ ହୋଇଛି ବୋଲି ଆମେ ସବୁ ଭୟ କରୁଛେଁ, ସେସବୁ ମନକୁ ମନ ଭାଲିଯିବା ନିଶ୍ଚିତ । ସେମାନେ ଧନ୍ଦାରେ ଆଗ୍ରହ ସହକାରେ ଲାଗି ରହିବା ଫଳରେ ଶରୀର ଶ୍ରମ ହେତୁ ତାଙ୍କର ଦେହ ମଜଭୁତ ରହିବ । ତା ସାଙ୍ଗକୁ ଉଚିତ ଖାଦ୍ୟ ପାଇବାକୁ ସାମର୍ଥ୍ୟ ଥିବା ହେତୁ ବେଶ୍ ସୁସ୍ଥ ସବଳ ବି ରହିବେ । ଏମାନଙ୍କ ମେଳରେ ରହିବାକୁ ଇଚ୍ଛା କରିବୁ ନା ନାହିଁ ? ଆଜି ପଡ଼ଶାଘରୁ ଯେଉଁ ରୋଗର ଭୟରୁ ତୋର ମନ ଏତେ ବ୍ୟସ୍ତ ହେଉଛି' ତା ଆଉ ରହିବଟି ?"

ମ· ପଧାନ, "ନା, ଆଦୌ ରହିବନି । ମୁଁ ତ ସେମାନଙ୍କ ମେଳରେ ନାଚିବି ଆଉ କୁଦିବି । ହଁ, ଭଗବାନଙ୍କର ସତେ ସୁଦୟା ହେବ, ମୋ ପଡ଼ିଶା ଘରୁ ରୋଗ ଦୂର ହେବ ! ସେଗୁଡ଼ିକ ସୁସ୍ଥ ସବଳ ହୋଇ ଆମ ଆଗରେ ଖେଳି ବୁଲି କରିବେ !"

ବ· ମହାପାତ୍ର, "କେବଳ ସେତିକ ନୁହେଁ ; ସେମାନଙ୍କର ସମ୍ବଳ ବଢ଼ିଲେ ତାଙ୍କର ବି ଗରଜ ଆମ ପାଖରେ ରହିବ । କିଏ କାହା ପୁଅକୁ ଦି'ଅକ୍ଷର ପଢ଼ାଇବାକୁ ଚାହିଁବ । ତେଲି କୁମ୍ଭାର-ଠାରୁ ହାଣ୍ଡି ଆଉ କୁମ୍ଭାର ତେଲିଠାରୁ ତେଲ ନେବ । ଠିକ୍ ଏହି ଭଳିରେ ଗାଁରେ ଗୁଡ଼ିଆ, କୁମ୍ଭାର, କମାର, ତନ୍ତୀ, ବଢ଼େଇ, କାରିଗର, କୁଟୁଣୀ, କୁଣାଳୀ, ଭଣ୍ଡାରୀ, କୃଷି, ଶିକ୍ଷକ, ନାହାକ, ବାରିକ, ଧୋବା, ବାଉରି, ଚମାର, ହାଡ଼ି ଓ ବ୍ରାହ୍ମଣାଦି ଚାରିବର୍ଣ୍ଣର ଲୋକେ ପ୍ରତ୍ୟେକ ପ୍ରତ୍ୟେକଙ୍କ ଉପରେ ନିର୍ଭର କରି ଚଳିଯାନ୍ତି । ଯାହା ଧନ ତା ପାଖକୁ, ତା ଧନ ଯା ପାଖକୁ, ଇମିତି ସେହି ଗାଁରେ ବୁଲୁଥାଏ । ଆଉ ବାହାରକୁ ଚାଲିଯାଇ ପାରେ ନାହିଁ । ଫଳରେ ସମସ୍ତ ଗାଁଟା ହୁଏ ସମୃଦ୍ଧିବନ୍ତ । ମହରଗ ଓ ଶସ୍ତାର ପ୍ରଶ୍ନ ରହେନି ।"

ମ: ପଧାନ, "ହଁ, ଏବେ ବୁଝିଲି, କାହିଁକି ଆମ ଗାଁରୁ ବର୍ଷକରେ କେତୋଟି କୁଟୁଣୀ ଏବେ ଉଦାସ ନେଇ ହୀନ କାର୍ଯ୍ୟ କଲେ, ଆଉ କେତେକ ମାଗିଖାଇ ଦ୍ୱାରେ ଦ୍ୱାରେ ବୁଲିଲେ, ପୁଣି କେତେକ ଘେର ପାଲଟିଲେ, ଆଉ ମୋ ପଡ଼ିଶାଘରେ କାହିଁକି କୁଷ୍ଠ ଓ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ ।"

ବ: ମହାପାତ୍ର, "ଏବେ ତୁ ବୁଝିଲୁ, କି କାରଣରୁ ମୋର ଓ ତୋର ମୁଣ୍ଡ ବୁଲୁଉଛି ଓ ଦଣ୍ଡେ ମନରେ ଶାନ୍ତି ରହୁନି । ଆମର ଶସ୍ତା ପଛରେ ଗଲା ଫଳରେ ଶେଷରେ ଇମିତି ଅବସ୍ଥା ପହଞ୍ଚୁଛି ଯେ, ଡ଼ାକ୍ତର ପାଖକୁ ଦଉଡ଼ ଦଉଡ଼ ଆଉ ଔଷଧ କିଣି କିଣି ଘର ବାସନ କୁଶନ ବି ସଫା ! ପଥ୍ୟ ପାଚନକୁ ବି କଷ୍ଟ ରହୁନି ! ତଥାପି ମନ ସବୁବେଳେ ଦକ ଦକ ହେଉଛି ।

ମ• ପ୍ରଧାନ, "ସାଆନ୍ତ, ଏ ହେଲା ଭଗବାନଙ୍କ ଅଭିଶାପ । ଗାଁ ଲୋକଙ୍କର ସ୍ୱାର୍ଥକୁ ନ ଚାହିଁଲେ ଆମ ସ୍ୱାର୍ଥକୁ ବିଭୁ ଆଉ ଚାହିଁବେ କାହିଁକି ? ଆମର ନିର୍ଦ୍ଦୟ ଭାବ ହେତୁ ଯେଉଁମାନଙ୍କର ଅବସ୍ଥା ଏତେ ଶୋଚନୀୟ, ସେମାନଙ୍କ ନିଃଶ୍ୱାସ ଓ ଅଭିଶାପ ଫଳରେ ଆମର ରୋଗ, ଦୁଃଖ ଆଉ ଭୟ ବଢ଼ିବନି ତ ଆଉ କାହାର ବଢ଼ିବ ?"

ବ• ମହାପାତ୍ର, "ତେବେ ତୁ ଏଣିକି ସ୍ୱଦେଶୀ ଓ କୁଟୀର-ଶିଳ୍ପର ଜୟଗାନ କରିବୁ । ବିଂଶ ଶତାବ୍ଦୀର ଶ୍ରେଷ୍ଠ ମାନବ ମହାତ୍ମା ଗାନ୍ଧି କ'ଣ ଏତିକି ଓହ୍ଲା ଥିଲେ ? ସେ ପରା କଳକୁ ନିନ୍ଦା କରି ଯାଇଛନ୍ତି । କଳ ପଛରେ ଆମେ ଯେତେ ଗୋଡ଼େଇବା ଆମର ହୀନ ଅବସ୍ଥା ସେତିକି ବଢ଼ି ଚାଲିବ ।"

ମଦନ ପ୍ରଧାନ, "ସାଆନ୍ତେ, ଆଉ ତୁମେ ଯେ ଧାନକଳ ବସାଇବାକୁ ମନ କରିଛ ?"

ବ: ମହାପାତ୍ରେ, "ବିଭୁର କୃପାଦୃଷ୍ଟି ହୋଇଛି ରେ ମଦନା । ମୋର ଚେତନା ଫେରିଛି । ମୁଁ କେବଳ ମୋର ସ୍ୱାର୍ଥ ଦେଖୁଥିଲି, ପୁଣି ଅନ୍ୟ ବହୁଙ୍କର ସ୍ୱାର୍ଥରେ ଧୂଳି ଦେଇ । ଏତାଦୃଶ କାର୍ଯ୍ୟ ଫଳରେ ଯେ କେତେ ବିଷମୟ ଫଳ ଭୋଗିବାକୁ ପଡ଼ୁଛି ଏବଂ ଆଉ ଅଧିକ ଭୋଗିବାକୁ ପଡ଼ିବ ତା'ର ଜ୍ଞାନ ମୋତେ ମିଳୁଛି । ଭଗବାନଙ୍କ ଇଚ୍ଛା, ଆଜି ତୋ'ର ମୋର ଭେଟ ହୋଇଛି ଏବଂ ପରସ୍ପର ମନ ଖୋଲାଖୋଲି କଥାବାର୍ତ୍ତାରେ ଯାହା ସମ୍ଭବ ହୋଇଛି, ଯାହା ପୂର୍ବରୁ ବହୁ ତର୍କରେ ବି ତା ହୋଇ ପାରିନି । ମୁଁ ଦେଖୁଛି, ନିଜକୁ ବଞ୍ଚାଇବାକୁ ଇଚ୍ଛା ଥିଲେ, ଆଉ ଆନନ୍ଦର ବାତା-ବରଣରେ ସୁସ୍ଥ ସବଳ ହୋଇ ହସି, ନାଚି କୁଦି ଜୀବନ କଟାଇବାକୁ ମନ କଲେ, ପାଖ ପଡ଼ୋଶୀଙ୍କର ସ୍ୱାର୍ଥକୁ ଅବଶ୍ୟ ଜଗିବାକୁ ପଡ଼ିବ ।

ତାହାହେଲେ ସେମାନେ ଆମ ସ୍ୱାର୍ଥକୁ ନଜର ଦେବେ, ବାବୁଙ୍କର କୃପାଦୃଷ୍ଟି ପଡ଼ିବ ଏବଂ ସମାଜରେ ସୁଖଶାନ୍ତି ବିରାଜିବ ।"

ମଦନ ପଧାନ "ତା ହେଲେ ତୁମେ ତେବେ ଧାନକଳ ବସାଉନ । ମୋତେ ପୁଣି ତେବେ ସେଇ ମାରୁଆଡ଼ି କଳକୁ ଯିବାକୁ ପଡ଼ିବ ।"

ବାଃ ମହାପାତ୍ର, "ଆରେ ମଦନା, ତୁ ତେବେ ଏତେ ଶୁଣି ଶୁଣି ଏଇୟା ସିଦ୍ଧାନ୍ତ କଲୁ ? ପୁଣି ସେ କଳ ଦ୍ୱାରକୁ ମାଡ଼ିବାକୁ ମନ କରୁଛୁ ?"

ମଦନ ପଧାନ, "ତେବେ କରିବ କ'ଣ ? କୁଟୁଭୁଣୀ ତ ମିଳୁନାହାନ୍ତି । ଧାନକୁଟା ହେବ କିପରି ?

ବାଃ ମହାପାତ୍ର, "ତୁ ତେବେ କହିବାକୁ ଚାହୁଁ ଯେ କୁଟୁଭୁଣୀ ନ ମିଳିବାରୁ ଏ ଧାନକଳ ଆସିଲା । ଆଚ୍ଛା, ସବୁ ଧାନକଳ ଯଦି ହଠାତ୍ ଆଜି ବିଗିଡ଼ିଯାଏ, ତେବେ ଧାନ ହୁଏତ ପାଖରେ ଥିବ, ଆଉ ଚାଉଳ ହେବନି । ଲୋକେ ନ ଖାଇ ମରିବେ ପଛେ ଆଉ ଧାନ କୁଟିବେନି ?"

ମ· ପଧାନ, "ଯୁଆ କମିତି ହବ, 'ଯେ ଦେଶେ ଯାଇ ସେ ଫଳ ଖାଇ' । ଧାନକଳ ବନ୍ଦ ହେଲେ ଧାନ ବଳେ କୁଟା ହେବ, ଢିଙ୍କି ପୁଣି ଚାଲୁ ହେବ, ଏକଥା ନିଶ୍ଚିତ ।"

ବା· ମହାପାତ୍ର, "ହଁ, ଠିକ୍ କଥା, ଧାନକଳ କୁଟୁଭୁଣୀଙ୍କୁ ହଟାଇଛି, ଲୋକଙ୍କୁ ଅଳସୁଆ କରିବାର ମନୋବୃତ୍ତି ଆଣିଛି । ଫଳରେ ଘରୁ ଢିଙ୍କି ଲୋପ ହେବା ଉପରେ ।"

ମ· ପଧାନ, "ଆଚ୍ଛା ସାଆନ୍ତେ, ଧାନକଳ ଆସିଲେ ତ କୁଟୁଭୁଣୀ ତାଙ୍କର ଧାନକୁଟା ବନ୍ଦ କଲେ କାହିଁକି ?"

ବା· ମହାପାତ୍ର, "ଲୋକେ ଦେଖିଲେ କୁଟୁଭୁଣୀ ଲଗାଇଲେ ବେଶି ଖରଚ ହେଉଛି । ସମସ୍ତେ ତ ଶସ୍ତା ପଛରେ ଗୋଡ଼ାଇଲେ ।

ଘରେ ଘରେ ଅତି ସଙ୍କଟ ଅବସ୍ଥାରେ ପଡ଼ନ୍ତି । ଏତେ ପରିଣାମ-ବୁଦ୍ଧି କେତେକଙ୍କର ବା ହଉଛି ? ମହାତ୍ମାଙ୍କର ହୋଇଥିଲା । ତେଣୁ ସେ କହିଗଲେ, 'କାଟି ପିନ୍ଧ ଆଉ କୁଟି ଖାଅ' । ସମସ୍ତେ କଳକୁ ଧାନ ପଠାଇବାର ଦେଖିବାରୁ କୁଟୁଭୁଣୀଙ୍କର ହଂସା ବୁଡ଼ିଲା; ଘରବାଲେ, ସେମାନଙ୍କର ଭେଳା ବୁଡ଼ିଲା । ତେଣୁ ଏ ଧାନକୁଟାକୁ ଆଶ୍ରୟ କରି ରହିପାରିଲେ ନାହିଁ । ସେମାନେ ଯେ ଯୁଆଡ଼େ ଗଲେ, ଦୁର୍ବଳ ହେଲେ, କିଏ ଭିକ୍ଷାବୃତ୍ତି କଲେ, କିଏ ଝାଟି ଗୋଟାଇଲା, କିଏ ଖାଇବାକୁ ନ ପାଇ ଇମିତି ଦୁର୍ବଳ ଆଉ ରୋଗଗ୍ରସ୍ତ ହେଲା ଯେ ସାମାନ୍ୟ କର୍ମପାଇଁ ନିଜକୁ ଅସମର୍ଥ ମନେକଲା । ତେଣୁ କାହାର ଟିକିଏ ଢିଙ୍କି କୁଟା ଚାଉଳ ଖାଇବାକୁ ଯେତେବେଳେ ମନ ହେଲା କି ଆବଶ୍ୟକ ହେଲା ସେତେବେଳକୁ କୁଟୁଭୁଣୀ ମିଳୁଛନ୍ତି କେତେକେ ? ତେଣୁ ଲୋକ ଅନନ୍ୟଗତି ହୋଇ କହେ, 'କୁଟୁଭୁଣୀ ତ ମିଳୁନାହାନ୍ତି, କଳକୁ ଧାନ ନେବନି ତ ଆଉ କ'ଣ ଉପାସ ରହି ମରିବ ?' କେବଳ ଏତିକି ନୁହେଁ । ଢିଙ୍କି ଯେ ଯାଗା ମାଡ଼ି ବସିଛି ତାହା ବି ଚକ୍ଷୁଶୂଳ ହେଲା । କାହାର କାହାର ଢିଙ୍କି ଚିରା ହୋଇ ଜଳାହୋଇ ସାରିଲାଣି । ଦୁର୍ଦ୍ଦଶା ଆସିଲେ ଇମିତି ଆସେ ରେ ମଦନା !"

ମ. ପ୍ରଧାନ, "ଲୋକେ ଢିଙ୍କିକୁଟା ଚାଉଳ ଖାଇବାକୁ ମନ କରନ୍ତି କାହିଁକି ?"

ବ. ମହାପାତ୍ର, "ଢିଙ୍କିକୁଟା ଚାଉଳରେ ସାର ଅଧିକ ରହେ । କଳକୁଟା ଚାଉଳରୁ ସାର ସବୁ କୁଣ୍ଡାରେ ଚାଲିଯାଏ । ଫଳରେ କଳ ଚାଉଳ ଅଧିକ ଖାଇବା ଫଳରେ ବେରିବେରି ରୋଗ ହୁଏ । ଏ ରୋଗରେ ଗୋଡ଼ହାତ ଫୁଲେ ଓ ଲୋକ ଅଳ୍ପାୟୁ ହୋଇ ମରେ । ପୁଣି ବଶିଷ୍ଟ ଲୋକେ କହୁଛନ୍ତି, କଳରେ ଚାଉଳ କମିଯାଏ ।

ଗ୍ଭଉଳକୁ ଅଧିକ ସଫା କରିବା ଫଳରେ ଗ୍ଭଉଳର ବହୁତ ଅଂଶ କୁଣ୍ଡାରେ ଗ୍ଭଲଯାଏ । ତେଣୁ ଢିଙ୍କିରେ କୁଟିଲେ ଗ୍ଭଉଳ ଅଧିକ ମଧ୍ୟ ମିଳନ୍ତା ଏବଂ ଖାଦ୍ୟସମସ୍ୟା କେତେ ପରିମାଣରେ କମିଯାନ୍ତା ।"

ମ· ପ୍ରଧାନ, "ଆଚ୍ଛା, ତେବେ ଏତକ ବି ଅଛି ! ଲୋକେ ଯ୍ୟା ଯଦି ବୁଝି ନାହାନ୍ତି, ଗ୍ଭଲ, ତୁମେ ଆଉ ମୁଁ ଯିବା, ଗାଁଏଁ ଗାଁଏଁ, ଘରେ ଘରେ ବୁଲି ଏକଥା ଲୋକଙ୍କୁ ବୁଝାଇବା । ତୁମେ ଯାହା ମୋତେ କହିଲ, ମୁଁ ମୂର୍ଖ ହୋଇ ମୋ ମନ ତ ବୁଝିଲା, ଅନ୍ୟ ଲୋକେ ନ ବୁଝିବେ କାହିଁକି ? ମୋର ବିଶ୍ୱାସ, ଲୋକେ ବୁଝିଗଲେ, କଳପାଖ କେହି ମାଡ଼ିବେନି ।"

ବି. ମହାପାତ୍ର, "ବର୍ତ୍ତମାନ ତେବେ ଉପାୟର ପନ୍ଥା ନିରୂପଣ କରିବାକୁ ହେବ । ଲୋକଙ୍କୁ ବୁଝାଇବାକୁ ହେବ, କଳକୁ ଧାନ ଦେଲେ କପରି ରୋଗ ଭୟ ଓ ଚୋର ଭୟ ବୃଦ୍ଧି ପାଉଛି ; ଯେଉଁ ଭୟ ହେଉଛି ତୁ ଅଭିଜ୍ଞ ଓ ମୁଁ ବି ସେପରି । ପୁଣି କଳ ଗ୍ଭଉଳ ସାରହୀନ ହେବା ଫଳରେ କପରି ଲୋକ ଅନ୍ତଃସାରଶୂନ୍ୟ ହୋଇ ରୁଗ୍‌ଣ ହୁଏ, ତା ବି କହିବାକୁ ହେବ । ସାମାନ୍ୟ ଶସ୍ତା ଓ ସୁବିଧା ପଛରେ ଯିବା ଫଳରେ ଡାକ୍ତର ଓ ଔଷଧ ପିଚ୍ଛା ଲାଭ ସହିତ କପରି ମୂଳ ଯିବ ଆଉ ଘରକରଣାଦି ସବୁ ବିକା ହେବ, ତଥାପି ଦୁର୍ଦ୍ଦଶା ମୋଚନ ହେବ ନାହିଁ, ଏ କଥା ବୁଝାଇ କହିବା ।"

ମ· ପ୍ରଧାନ, "କାହିଁକି, କୁଟୁଭୁଣୀ ପଛେ ଯାହା ଯାହା ନଉଥିଲେ ତା'ର ଦିଗୁଣା ଅଥବା ତିନିଗୁଣା ନିଅନ୍ତୁ, ତଥାପି ମାଇ କଳକୁ ଧାନ ନ ନେଇ କୁଟୁଭୁଣୀଙ୍କଦ୍ୱାରା କୁଟାଇବାକୁ ମୋର ଇଚ୍ଛା ହେଲାଣି । ପାଖପଡ଼ଶାଙ୍କ ସ୍ୱାର୍ଥକୁ ଆମେ ଦେଖିଲେ ସେମାନେ

ଆମ ସ୍ୱାର୍ଥ ଦେଖିବେ । ବିପଦ ଆପଦକୁ ବି ସେମାନେ ସାହା ହେବେ ।

ବି· ମହାପାତ୍ର, "ଲୋକେ ଦାନ ଧର୍ମ କରିବା କ'ଣ ତୁ ଦେଖିନୁ ? ମାତ୍ର ପାଖ ପଡ଼ଶା ଲୋକଙ୍କୁ ଭୋକ ଉପାସରେ ମାରି, ସ୍ୱଦେଶୀବର୍ଜନ କରି ଏବଂ ବିଦେଶୀ ମୋହରେ ଯାଇ ଯେ ଦାନଧର୍ମ ହୁଏ ତାହାର ଲଭ କଣ ? ଗୋବିନ୍ଦଦ୍ୱାଦଶୀ ବୁଡ଼ ପାଇଁ ଲୋକ ଶହ ଶହ ଖର୍ଚ୍ଚ କରି ଆସୁଛି ! ଅଥଚ କୁଟି ଭୁଣୀଙ୍କୁ ଗଣ୍ଡେ ଅଧିକ ଚାଉଳ ଦେଲେ ତ ମାନବଦେହଧାରୀ ଜୀବନ୍ତ ଦେବତା ତୃପ୍ତ ହୁଅନ୍ତେ, ସମାଜରେ ଏକ ସୁସ୍ଥ ବାତାବରଣ ଖେଳନ୍ତା ଏବଂ ସମାଜ ଋଦ୍ଧିମନ୍ତ ହୁଅନ୍ତା । ଏହା କ'ଣ ପୁଣ୍ୟ ନୁହେଁ । ଏ ପୁଣ୍ୟର ଫଳ ହାତେ ହାତେ ମିଳିଯାଉଛି, ଅଥଚ କେଉଁଠି ବୁଡ଼ ପକାଇବା ଏବଂ କେଉଁଠି କ'ଣ ଯାଚଞ୍ଚା କରିବା ଇତ୍ୟାଦିର ଫଳ ମିଳିବା ନ ମିଳିବାରେ ବି ସନ୍ଦେହ ରହିଛି । ଯେଉଁ ପୁଣ୍ୟ କାର୍ଯ୍ୟର ଫଳ ନିଶ୍ଚିତ, ତା କଣ ଆଗ କରିବାର ନୁହେଁ ?"

ମଦନ ପଧାନ, "ନିଶ୍ଚୟ କରିବାର କଥା । ବର୍ତ୍ତମାନ କଳ ସବୁତ ଠିକ୍‌କରି ଦେବାକୁ ପଡ଼ିବ । ମୋ ସ୍ତ୍ରୀ ଆଜିଠାରୁ ଧାନ କୁଟିବ । ଆଉ ମୋର ବିଶ୍ୱାସ, ମୋ ଜଣା ଶୁଣା କେତେକ ସ୍ତ୍ରୀ ଲୋକ ଅଛନ୍ତି, ଯେଉଁମାନେ ଅଧିକ ଚାଉଳ ପାଉଣା ପାଇଲେ ଧାନକୁଟାକୁ ବ୍ୟବସାୟ ସୂତ୍ରରେ ଆଶ୍ରୟ କରିବେ । ତୁମେ ଏଥିରେ ଅଗ୍ରଣୀ ହୁଅ । ମୁଁ ତୁମପିଛୁ ଧରୁଛି, ମୋତେ ଯେମିତି ନିର୍ଦ୍ଦେଶ ଦେବ, ଠିକ୍ ସେମିତି କରିବି । ଆମେ ହାରେ ହାରେ ଆଉ ଗାଁଏ ଗାଁଏ ବୁଲି ଲୋକଙ୍କୁ ବୁଝାଇଲେ ଲୋକେ ଅଧିକ ଭାବରେ ଆମ ମତକୁ ଗ୍ରହଣ କରିବେ । ପୁଣି ଧାନକୁଟାକୁ ସମ୍ବଳ କରି ଲୋକ ବାହାରିବେ । ଏଣେ କହୁଛ, 'ଲୋକସଂଖ୍ୟା ବଢ଼ିଚାଲିଛି' ! ଏତେବେଳକୁ ବାହାରି-

ବେଳ ? ଏ ତ ଏକ ଓଲଟା କଥା !

ବ: ମହାପାତ୍ର, "ଆରେ, କେତେକ ବାଞ୍ଛିମାସ୍ତ୍ର କାମ ନ ହେଲେ, ନିନ୍ଦାରୁ ଅବ୍ୟାହତି ପାଇବା ପାଇଁ ଲୋକବୃଦ୍ଧିର କାରଣ କେତେକ ଆଳ ସ୍ୱରୂପ ଦର୍ଶାଇଥାନ୍ତି । ମାତ୍ର ଧାନ କଳକୁ ପଠାଇବା ବେଳକୁ ଲୋକବୃଦ୍ଧିର ପ୍ରଶ୍ନ ସ୍ୱପ୍ନରେ ବି ନାହିଁ । 'କୁଟୁଣୀ ତ ମିଳୁଲେନି— କରିବା କ'ଣ ?' ଏପରି ଯେଉଁ ଯୁକ୍ତିଟା ଆସୁଛି, ତାହା ସବୁବେଳେ ଆସିଲେ ସିନା ହେବ ! ଯଦି ସେମାନେ ଧାନ କଳକୁ ପଠାଇବା-ବେଳେ ଜନସଂଖ୍ୟାବୃଦ୍ଧି ବିଷୟ ମନକୁ ଆଣନ୍ତେ, ତେବେ ବିଚାରଧାରା ଅଲଗା ପ୍ରକାର ହୁଅନ୍ତା । ସେତେବେଳେ ଭାବନ୍ତେ, କଳର ପ୍ରଭାବରୁ ଲୋକେ ଧାନ କଳକୁ ପଠାଇବା ହେତୁ, ଧାନକୁଟାକୁ ନିର୍ଭର କରି କେହି ରହିଲେ ନାହିଁ । ଫଳରେ କୁଟୁଣୀ ସବୁ ଫିଟିଗଲେ । ଯେ ଯୁଆଡ଼େ ଗଲେ, ଖୋଜିଲା ବେଳକୁ ମିଳିବେ କୁଆଡ଼ୁ ?"

ମ· ପ୍ରଧାନ, "ଆଉ ବେଶୀ ତର୍କ ଲୋଡ଼ା ନାହିଁ । ମୋର ଭାଗ୍ୟ, ଆଜି ସାଆନ୍ତଙ୍କଠୁଁ ମୋତେ ଜ୍ଞାନ ମିଳିଛି । ଆଜିଠାରୁ ଆମକୁ ସ୍ୱଦେଶୀ ଭାବ ଅଣିବାକୁ ପଡ଼ିବ । କୁଟୀରଶିଳ୍ପ ପୁଣି ଗଢ଼ି ଉଠିବ । କଳକୁ ତ ମୋଟ ଉପରେ ପାରୁପର୍ଯ୍ୟନ୍ତ ଛାଡ଼ିବାକୁ ହେବ ।"

ବ: ମହାପାତ୍ର, "ତେବେ ମହାତ୍ମାଙ୍କର କାଟି ପିନ୍ଧିବା ଓ କୁଟି ଖାଇବା ମତକୁ ଭଲଭାବରେ ବୁଝି ନେଲୁ । ମୋଟ ଉପରେ ଯାହାକୁ ବୁଝିଲେ ତାହା ଅନୁସାରେ ଅନ୍ୟ ସବୁ ବୁଝିବାକୁ ବେଶି ଡେରି ହେବ ନାହିଁ । ମନେ ରଖିଥା ତରେ ମଦନା, ଥରେ ଏ ଘରଣୀସ୍ଥ ଚିନ୍ତାଧାରାରେ ବାସ୍ତବ ଦୃଷ୍ଟିକୋଣର ରେଖାପାତ ହେବାମାତ୍ରେ, ତାହା ଏପରି ଭାବରେ ଅଙ୍କୁରିତ ହୋଇଯାଏ ଯେ

ସମୁଦାୟ ଜନତା ତଦ୍ଦ୍ୱାରା ଉଦ୍‌ବୁଦ୍ଧ ହୁଏ, ତଦନୁସାରେ ଚଳେ ଓ ସୁଖ ଶାନ୍ତିର ବାତାବରଣ ଫେରି ଆସେ । ମନେ ହେଉଛି, ସେ ବେଳ ଆଖିର ହୋଇ ଆସିଲା । ଏବେ ଏ କଳ ବିରୁଦ୍ଧରେ ଏକଜୁଟ ଅଭିଯାନ ଲୋଡ଼ା । କଳ ଯେତେ ଶୀଘ୍ର ଲୁଚିଯିବ, ଆମେ କଳପାଖକୁ ଯେତେ ପାରୁ ଯିବାନି । କଳ-ରାବଣାସୁରର ଅସୁର ସଭ୍ୟତା ପ୍ରକୃତି-ଉପାସକ ରାମଙ୍କଦ୍ୱାରା ଧ୍ୱଂସ ପାଇଲାପରି, ଏତାଦୃଶ ଆସୁରୀସଭ୍ୟତା ନିଶ୍ଚୟ ବିଲୁପ୍ତ ହେବ, ଏଥିରେ ସନ୍ଦେହ ନାହିଁ ।”

---

# କମ୍ପାନୀ ସିଲ୍ ତ ଠିକ୍ ଅଛି

ବାପା—( ମଦନ ପଟ୍ଟନାୟକ, ତେଲଟିଣକୁ ଦେଖାଇ ) “ଆରେ ପୁଅ, ଏ ତେଲ କାହା ଦୋକାନରୁ ଆଣିଲୁ କରେ ?”

ପୁଅ—( ବଳ ପଟ୍ଟନାୟକ) “କାହିଁକି, କ’ଣ ହେଲା କି ?”

ବାପା—“ଆରେ ନାଇଁ ମ, କାଲିଠୁ ଏ ତେଲ କରେଇରେ ପକାଇବା ବେଳୁଁ ତେ। ବୋଉ କଚାଳ କରୁଛି, କହୁଛି, ଖାଲି ଫେଣ ବହୁତ ବାହାରୁଛି ; ଆଉ କମିତି ଗୋଟାଏ ବିକଟାଳିଆ ଗନ୍ଧ ବାହାରୁଛି ଯେ, ତା’କୁ ଭୟ ହେଉଛି କାଲେ କ’ଣ ହେବ ।”

ପୁଅ—“ହବ ଆଉ ଗୋଟାଏ କ’ଣ ? ଦୁନିଆଯାକ ତ ଖାଉଛନ୍ତି । ତାଙ୍କୁ ଆଉ କିଛି ହେଉନି, ଆମକୁ ହେବ ! ଆମର ଏଥିପାଇଁ ଭୟ ଏତେ କାହିଁକି ଯେ ?”

ବାପା—"ଆରେ, ତୁ ତ ପିଲା, ବଡ଼ ହେଲେ କେତେ କଥା ଜାଣିବୁ । ଆରବର୍ଷ ଠିକ୍ ଏହି ସମୟରେ ଆମ ଗାଆଁରୁ ଦଶଜଣ ଢେଙ୍କିଆ ଏପରି ତେଲ ଖାଇବା ଫଳରେ ହାତ ଗୋଡ଼ ଫୁଲି ମରିଗଲେ । ତେଲରେ ଅଗର୍ ମିଶିଥିଲା ବୋଲି ଲୋକେ କହିଲେ ।"

ପୁଅ—"କାହିଁକି, ସଙ୍ଗେସଙ୍ଗେ ସେ ତେଲକୁ ପରୀକ୍ଷା କରାଇ ନେଲେନି ? କ'ଣ ପରୀକ୍ଷା କରିବାକୁ କିଛି ଉପାୟ ନ ଥିଲା ?"

ବାପା—"ତେଲ ପରୀକ୍ଷା ଆଉ ହେଇନି ? ପରୀକ୍ଷା ହେଲା ସତ ; ମାତ୍ର ତେଲରେ ଯାହା ମିଶୁଛି, ତାହା ଇମିତି ପରୀକ୍ଷିତ ହୋଇ ମିଶା ଯାଇଥିଲା ଯେ, ତାହା ତେଲରେ ଅଛି ବୋଲି ଜାଣିବା ଅସମ୍ଭବ ହୋଇ ପଡ଼ିଲା ।"

ପୁଅ—"ଯାହା ଦୋକାନରୁ ତେଲ ଆସିଥିଲା, ତା'କୁ ଫେରାଇ ଦେଲେନି ? ଖାଇଲେ କିଆଁ—ମଲେ କିଆଁ ?"

ବାପା—"ଆରେ, ଯାହାଠୁ ତେଲ ଆସିଲା, ତାକୁ ଫେରାନ୍ତେ କିପରି କହିଲୁ ? ତେଲର ରଙ୍ଗ ଠିକ୍, ବାସନା ଠିକ୍, କଡ଼ା ଯେ ନାକ ପୋଡ଼ୁଛି, ଆଉ ପରୀକ୍ଷା ହେଲା ଯେ, କ'ଣ ମିଶିଛି ଜାଣି ହେଲାନି ; ଠିକ୍ ଯେପରି ଆଜିକାଲି ଘିଅରେ ଡାଲଡା ମିଶିଲେ ବି ଜାଣି ହେଉନି । ତେବେ କ'ଣ ବୋଲି କହି ଫେରା-ଇବେ କହିଲୁ ?"

ପୁଅ—(ଚକିତ ହୋଇ) "ଏବେ ବାପା, କ'ଣ କରିବା କହିଲ ? ଏ ଯୁ' ପରିସ୍ଥିତି, ଏଥିରେ ତ ସମସ୍ତଙ୍କ ମେଳରେ ଜୀବନ ଧରି ଚଳିବାକୁ ପଡ଼ିବ । ଏ ସବୁ ଭେଜାଲ୍ ଜିନିଷର କବଳରୁ ରକ୍ଷା ପାଇବାର ତେବେ ଉପାୟ କ'ଣ ?"

ବାପା—"ତା'ର ଉପାୟ ତ ପରେ ବିଚାର କରିବା, ଏବେ

ଯୁଁ ତେଲ ଆଣିଛୁ, ତାକୁ ଫେରାଇବାକୁ ଆଉ ଡେରି କରନା । ହେଉଛି, ବୋଉ ଆସିଲେ ମୋତେ ରଖେଇ ଥୋଇ ଦେବନାହିଁ ।”

ପୁଅ—“ବାପା, ଏ ପ୍ରକାର ଫେରାଫେରି ମୋତେ ଭଲ ଲାଗେନା, ବାରମ୍ବାର ଏପରି ଫେରାଇବା ଫଳରେ ମୋତେ ଲାଜ ମାଡୁଛି ।”

ବାପା—“ତୁ କାହା ଦୋକାନରୁ ଆଣିଛୁ କହିଲୁ । ମାନ ଅପମାନକୁ ଏ ଯୁଗରେ ଏତେ ଡରିଲେ ଚଳିବ ?”

ପୁଅ—“କାହିଁକି, ଆମର ଯାହା ଦୋକାନରୁ ନିତି ସଉଦା ଆସେ, ସେହି ରଥି ପାଢ଼ି ଦୋକାନରୁ ତ ଆଣିଛି । ରଥି ପାଢ଼ି ତ ଆମକୁ ବହୁବର୍ଷ ହେଲା ସଉଦା ଦେଇ ଆସୁଛି, ସେ କଣ ଆମକୁ ଠକିବ ?”

ବାପା—“ଆରେ, ଚିହ୍ନା ବଣିଆ ଅଧିକ ଠକନ୍ତି । ତାକୁ କହିବୁ, ଏ ତେଲକୁ ଫେରାଇ ଅନ୍ୟ ଭଲ ତେଲ ଦେଉ । ମୁଁ କହିଛି ବୋଲି କହିବୁ ।”

ପୁଅ—“ଏ ତେଲ ଫେରାଇବା ପରେ ପୁଣି ଯୁଁ ତେଲ ଦେବ ତା ଯଦି ଖରାପ ପଡ଼େ, ତାକୁ କ'ଣ କରିବ ?”

ବାପା—“ଫେରାଇ ଦେବା ।”

ପୁଅ—“ଇମିତି କ'ଣ ଫେରାଫେରି ଚାଲିଥିବ ? ଆଉ ବେପାର କରୁ ନାହିଁ ?”

ବାପା—( ବିରକ୍ତ ହୋଇ ) “ଆଉ କ'ଣ ଫେରେଇବାନି, ଖାଇ ମରିବା ? ରଥି ପାଢ଼ି ନ ଦେଲେ ଅନ୍ୟ ଦୋକାନରୁ ତେଲ ଆସିବ ।”

ପୁଅ—“ସେମାନେ ଯଦି ସେପରି ତେଲ ଦିଅନ୍ତି, ତେବେ କି ଉପାୟ ?”

ବାପା—(ଟିକିଏ ଚମକିତ ହୋଇ) "ତେବେ ଇମିତି ଯୁକ୍ତି କରୁଥିଲେ ତ ଗୁଲୁଥିବ ; ଏଣେ ଆମର ବେଳ ଉଚ୍ଛୁର ହେବ । ବୋଉର ତାନମାନ ସହିବାକୁ ଆଉ ବେଳ ନାହିଁ କି ବଳ ନାହିଁ । ବୋଉର ଟିଁ ଟିଆଁ କଥା କ'ଣ ତୁ ଜାଣିନୁ ? ଯା ଯା, 'ଗଲୁ, ଫେରେଇ ଆସିଲୁ ! ବୋଉ କଥା ତ ଅନ୍ତତଃ ରହିଯିବ । ତା'ପରେ ଯଦି ଖରାପ ପଡ଼େ, ତେବେ ଆଉ କ'ଣ ଫେରେଇବାକୁ କହିବ ?"

ପୁଅ—"ମୁଁ ଏତେ ଯୁକ୍ତି କରୁଥିଲି କ'ଣ ମିଛରେ ? କାଳେ କ'ଣ ଉପାୟ ତୁମଠୁ ମିଳିବ, ଏଇ ଆଶାରେ ଯିନା କହୁଥିଲି, ମାତ୍ର ସେ ଆଶା ବ୍ୟର୍ଥ ହେଲା । ମୁଁ ବୋଉ କହିବା ଅନୁସାରେ ସଙ୍ଗେ ସଙ୍ଗେ ତେଲକୁ ନେଇ ଫେରେଇଛି ।"

ବାପା—"ଫେରେଇଛୁ ? ସେ କ'ଣ କହିଲା ଫେରେଇଲାକୁ ?"

ପୁଅ—"ସେ ତ ନେଲାନି, ମାତ୍ର ମୋତେ ଯାହା କହିଲା, ସେଥିରେ ମୋର ଅକଲ ଗୁଡୁମ୍ !"

ବାପା—(ବିରକ୍ତ ହୋଇ) "କ'ଣ ହେଲା, ନେଲାନି ? ଆ—ମୁଁ ତେବେ ଯାଉଚି । ଆଜି ତା'ର ଦିନେ କି ମୋର ଦିନେ । ଆମେ ଏ ତେଲ ଖାଇ କ'ଣ ମରିବୁ ? ଆମର ସେ ପୁରୁଣା ଦୋକାନ ତେବେ ଆଜିଠୁ ବନ୍ଦ ହେଲା । (ଟିକିଏ ଥକିଯାଇ) ଆରେ ପୁଅ, ମୁଁ ଗୋଟେ କଥା କହିବାକୁ ଭୁଲିଯାଇଛି, ତୁ ତେଲ କିଣି ଆଣିଲା-ବେଳେ Company seal intact, ମାନେ କମ୍ପାନି ସିଲ୍ ଠିକ୍ ଅଛି ଦେଖି ଆଣିଛୁ ଟି ?"

ପୁଅ—"କ'ଣ ମୁଁ ଏତେ ବୋକା ଯେ, ତା' କରିନି ? ସେଥିପାଇଁ ତ ମୁଁ ଫେରେଇବାକୁ ସାହସ କଲି ନାହିଁ । ଖାଲି ଯିନା ଜଣେଇଦେଲି, ତେଲ ଖରାପ ପଡ଼ିଲା ବୋଲି । ସେ ତେଣେ କମ୍ପାନିକୁ ଯିନା ଲେଖାଲେଖି କରିବ, ଆଉ ଫେରନ୍ତା କିପରି ?"

ବାପା—"ହଁ ସତ କଥା, ତେବେ ଋଷି ପାତ୍ରର ଦୋଷ କ'ଣ ? ସେ ଏତେ ଲମ୍ବା ପୁରୁଣା ଦୋକାନୀ ଆମର, ଆମକୁ କ'ଣ ଠକନ୍ତା ? ଏ ସବୁ ଗୋଳମାଳ ତେବେ ସେଇ କମ୍ପାନୀରୁ ହୋଇଚି । 'କମ୍ପାନୀ ସିଲ୍ ତ ଠିକ୍ ଅଛି' ଏଇ ଦମ୍ଭରେ ବିଷକୁ ଅମୃତ ମଣି, ଖାଉଛୁ । ତେବେ କମ୍ପାନୀରେ ଯେ ବିଷକୁ ଅମୃତ ବୋଲି ସିଲ୍ ମାରି ପାରନ୍ତି, ଏ ସନ୍ଦେହ ତ ଆମର ନାହିଁ ! ଥିଲେ ବା ଉପାୟ କ'ଣ ଅଛି ?"

ପୁଅ—"କ'ଣ, ଉପାୟ ନାହିଁ ?"

ବାପା—"ନାହିଁ ରେ ବାଳ, ନାହିଁ ! କମ୍ପାନୀ ରହିଲାଣି ହଜାର ହଜାର ମାଇଲ ଦୂରରେ, ସେଥିରେ ପୁଣି ଯେଉଁଠି ତା'ର କାରଖାନା, ତା'ର ଦୁଆର ମୁହଁରେ No Admission (ପ୍ରବେଶ ନିଷେଧ) ଲେଖା ହୋଇ କଡ଼ା ଗୁର୍ଖାସୈନ୍ୟ ଜଗୁଆଳି ରହିଛି । କ'ଣ ମିଶା ହେଲା ଜାଣିବାର ଉପାୟ ଆମର ଅନ୍ତତଃ ନାହିଁ । ଆଉ କାହାର ବା ' ଆମର ତ ଲକ୍ଷ୍ୟ ରହିଲା ସିଲ୍ ପ୍ରତି । ଯଦି କମ୍ପାନୀ ସିଲ୍ ଠିକ୍ ଅଛି, ତେବେ ସବୁ ଠିକ୍ ।"

(ଏତିକି ବେଳେ ଆର୍ତ୍ତ ସାହୁ ବୁଢ଼ା ତେଲୀ ଦରିଦ୍ର ବେଶରେ ସେଇ ବାଟ ଦେଇ ଗଲାବେଳେ)

ସାହୁ—"ଆଜ୍ଞା, ଅବଧାନ ! ପେଟ ବିକଳରେ ଏ ଗାଁ ଛାଡ଼ି ଚାଲିଯାଉଛି । ଘଣା ଆଉ ଚାଲୁନି । ମହଙ୍ଗା ବୋଲି ମୋ ତେଲ ତ କେହି ନେଲେନି । ମୋର ଯୁ' କେତେ ଯେ, ମୁଁ କଳ ସଙ୍ଗେ ଲଢ଼ିବି ?"

ମଦନ ବାବୁ—"ଆହେ ସାହୁଏ, ତୁମ ପୁଅଟି କୁଆଡ଼େ ଗଲା ?"

ସାହୁ—"ସେ ଯାଇଛି କୁଲି କାମରେ, ଆଜକୁ ଛ'ମାସ ହେବ । ସେଠାରେ ହାଡ଼ଭଙ୍ଗା କାମ କରି ଆଉ ପେଟକୁ ଭଲ

ଖାଇବାକୁ ନ ପାଇ ପୁଣି ବେଳେ ବେଳେ ମୋଟେ ନ ପାଇ, ପେଟମରା ବେମାରି ବାହାରିଛି ଯେ, ଏତେ ବଡ ଭେଣ୍ଡିଆ ପୁଅ ମୋର, ଆଜି ଦିନ କେଉଁଠାରେ ଅକାମୀ ହୋଇ ପଡ଼ିବ । ମୁଁ କରେ କ'ଣ ? ଘଣା ଚାଲୁଥିଲା, ଏମାନେ ସବୁ ଚଳୁଥିଲେ ; ' ଘଣା ଚଲା ବନ୍ଦ ହେଲାରୁ ସେମାନଙ୍କୁ ଚଳାଇବା ବି ବନ୍ଦ ହେଲା ।"

ବଳି ବାବୁ—(ବ୍ୟଗ୍ର ହୋଇ) "ସାହୁଏ, ତୁମର ଗୁହାଳରେ ଭଲ ଭଲ ଗାଈ ଥିଲେ, ଦୁଧ ତୁମ ଘରୁ ଆମ ଘରକୁ ଆସୁଥିଲା ନିତି ସେରେ ଲେଖେଁ ; ସେ ଗାଈ ସବୁ ଗଲେ କୁଆଡ଼େ ?"

ସାହୁ—"କ'ଣ କହିବି ବଳି ବାବୁ ! ଗାଈ ଯେତେ କଷ୍ଟରେ ମୁଁ ଆଣିଥିଲି ଆଉ ବିଦା କଲାବେଳେ ଯେତେ କାନ୍ଦିଛି ! ଘଣା ଥିଲାରୁ ବଳଦ ଥିଲେ । ଖାଲି ବଳଦ ରହିବେ କାହିଁକି, ଗାଈ ବାନ୍ଧିଥିଲି, ଦୁଧ ମିଳୁଥିଲା, ଆଉ ତା'ର ଅଣ୍ଡିରା ପିଲା ଘଣାରେ ଲାଗୁଥିଲା । ମାଈ ପିଲାତକ ପୁଣି ଗାଈ ହୁଅନ୍ତି । ଚଳିଯାଉଥିଲି ଇମିତି । ସବୁ ତ ସରିଗଲା ଘଣା ଗଲାଠୁ । ମୋର ବାଡିବୁଦ୍ଧି ସବୁ ଲୋପ ହୋଇଛି ବଳି ବାବୁ ?"

ମଦନ ବାବୁ—"ଆହେ ସାହୁଏ, ତୁମର ଖାଲି କ'ଣ ଦୁଃଖ ହେଉଛି ? ଆମେ ତ ଏବେ କାହିଁ କାନ୍ପୁର, କାହିଁ କେତେ ହଜାର ମାଇଲ ଦୂରରୁ ଟିଣରେ ସିଲଦିଆ ତେଲ ଖାଇ ମରିବାକୁ ବସିଲୁଣି । ଆମର ସୁ' କେତେ ଯେ ଆମେ ଯାଇ ସେଠି ତଦାରଖ କରିପାରିବୁ ?"

ସାହୁ—"ହଁ, କାଣୀ ବରଡ଼ କୁଜ ଅସରପା ଉପରେ ଘଇତା ହେଲପରି ମୋତେ ସିନା ତାଗିଦ କର, ମୋ ଘଣା ପାଖରେ ବସି ତେଲ ପେଡ଼ାଇ ନିଅ । ତମ ଗାଁ ବାଡ଼ ପଟରେ ମୋ ଘଣା । ଗହେ ଘର ଲୋକଙ୍କର ନଜର ମୋ'ରି ଘଣା ଉପରେ । ସୁଆଡ଼େ ଯେ

ଯାଉ ସେ ଟିକଏ ମୋ ଘଣା ପାଖରେ ଠିଆ ନ ହେଲେ ଯାଏନି । ମୋର ଯୁ ଁ କେତେ ଯେ ମୁଁ ମିଶାମିଶି କରନ୍ତୁ ; ତଥାପି ତ ବେଳେ ବେଳେ କେତେ ଲୋକ କେତେ କଥା କହନ୍ତି । ମୁଁ ସେମାନଙ୍କ ଆଗରେ ତେଲ ପେଡ଼ାଇଦିଏ । ଇମିତ ଙ୍କ ତେଲ ପେଡ଼ା ଶବ୍ଦ ହେଲା ମାତ୍ରକେ ଆଗଭୁରା ବସି ତେଲ ନେଇଯାନ୍ତି ।”

ମଦନ ବାବୁ—“ ହଁ ହେ ସାହୁଏ, ମୁଁ ତ କେତେଥର ବଳକୁ ପଠାଇଛି ଘଣାପାଖକୁ ତେଲ ଆଣିବାପାଇଁ । ତମ ତେଲ କେଡ଼େ’ ଭଲ-ଅ ; ବଳଟବାଉ ତମ ଘଣା ତେଲକୁ ସବୁବେଳେ ଝୁରୁଛି । କହୁଚ, ଯେତେ ଯାହା ହେବ, ଆଉ ସାହୁର ଘଣା ତେଲପରି ତେଲ କ’ଣ ସତେ ଆଉ ମିଳିବ ?”

ବଳ ବାବୁ—“ସାହୁଏ ତମେ ଏଥର ଘଣା ପକାଅ, ଗାଁ ଗୁଡ଼ା ଯାଅନି । ଆମେ ଏ ଗାଁରେ ସଭା କରି ଠିକ୍ କରିବୁ, ତମଠାରୁ ତେଲ ନବୁ ; ହଉ ମହଙ୍ଗା ।”

ଠିକ୍ ଏତିକବେଳେ ଗାଁ ସ୍କୁଲର ହେଡ୍‌ପଣ୍ଡିତ ଗୋପୀନାଥ ମହାପାତ୍ରେ, ଗାଁର ଧନୀ ମହାରଣା, ତନ୍ତୀ ଅପର୍ତ୍ତି ସାହୁ, ନାହାକ ସନାତନ ନାୟକ ଓ ଆଉ କେତେଜଣ ସେ ବାଟରେ ଯାଉଥିବା-ବେଳେ ଏକ ସ୍ୱରରେ ବଳ ବାବୁଙ୍କ କଥାକୁ ସତେ ଛଡ଼େଇ ନେଲାପରି କହିଲେ, “ହଉ ମହଙ୍ଗା, ନ ହେଲେ କ’ଣ ସମସ୍ତେ ମରିବା ଏ କଳ ତେଲ ଖାଇ ? ଖାଲି କମ୍ପାନୀ ସିଲ୍ ଠିକ୍ ଅଛି ! ରଖ ହେ ତମ ସିଲ୍‌କୁ ।”

ଗୋପୀନାଥ ମହାପାତ୍ରେ—“ଆରେ, ଏଡ଼େ ପାଟି କାହିଁକି କରୁଛ ? ଭୁକିଲା କୁକୁର କାମୁଡ଼େ ନାହିଁ ରେ ! ଯାହା ତ କରିବ କରିଯିବ । ଏଡ଼େ ପାଟିଗୋଳ କାହିଁକି ?”

ବଳି ବାବୁ—"ହଁ, ଟିକିଏ ପାଟି ବି ଲେଉଡ଼ା, ଏଣେ କାମ ବି ଲେଉଡ଼ା।"

ଅପର୍ତି ସାହୁ—"ଶୁଣିଲ ଆର୍ତ୍ତ ସାହୁ ବୁଢ଼ା ଏ ଗାଁ ଛାଡ଼ି ଚାଲିଯାଉଛି । କେତେ କଷ୍ଟ ଆମର ସହୁଛି । ଆମେ ତା'ର ଘଣାପାଖରୁ ତେଲ ଆଣୁ ଯେ ଦେହକୁ କେତେ ଉପକାର । ହଉ ମହଙ୍ଗା । ତେଲ ମହଙ୍ଗା କଲେ ସେ ପୁଣି ମୋଠୁ ଲୁଗା କଣେନି ? ସେଥିରୁ ମୁଁ ଦାମ କଷି ଓଲଟି ତା'ଠୁ ପାଇ ଯାଏନି ? ମତେ ତା'ତେଲ ମହଙ୍ଗା ହେଲାବେଳକୁ ମୋ ଲୁଗା ତାକୁ ମହଙ୍ଗା, ଏ ହାତରେ ଦେଲେ ସେ ହାତରେ ପାଏ । ଆଉ ମହଙ୍ଗା ଶସ୍ତା କଥା ଉଠିଲା କୁ'ଠି ?"

ଧର୍ମ ମହାରଣା—"ଆରେ, ମହଙ୍ଗା କ'ଣ ମ ? ଆମେ ସମସ୍ତେ ତ ମିଳାମିଶି, ସୁଖରେ ଚଳି ଯାଉଥିଲୁ । ମୁଁ ତା'ର ଘର ତୋଳିଛି; ଦୁଆର ଝରକା ସବୁ କରିଛି, କେତେଥର ଘଣା ଭିଆଣଠାରୁ ମରାମତି ପର୍ଯ୍ୟନ୍ତ ସବୁ କରିଛି । ମୋଠୁ ତେଲର ଦାମ୍ କହିଲେ ମୁଁ ମଜୁରିରେ କଷୁଥିଲି ।"

ଗୋପୀନାଥ ମହାପାତ୍ରେ—"ଆରେ, ଦାମ୍‌କୁ ଜଗିବ ନା ଶରୀରକୁ ଜଗିବ ? ଆରବର୍ଷ ପରା ଆମ ଗାଁରୁ ଦଶଜଣ ଭେଣ୍ଡିଆ ଏଇ ବଜାରର ତେଲ ଖାଇ ମଲେ ବୋଲି ଜାଣିଚ । ପୁଣି ସେ କମ୍ପାନୀର ମିଲ୍ ଧୁଆ ତେଲକୁ ଆଶା କାହିଁକି ? ମୋ'ଠୁ ଯିମିତି ତେଲରେ ଦାମ ନେଉଥିଲା, ସିମିତି ତା'ପିଲାଙ୍କୁ ମୁଁ ଦି'ଅକ୍ଷର ପଢ଼ାଇ ପାଉ ନ ଥିଲି ?"

ସନାତନ ନାୟକ—"ଆରେ, କେତେଥର ଏ ବୁଢ଼ା ସାହୁ ମୋ ପାଖକୁ ଆସିଛି । ଜାତକ ଦେଖେଇ ଦି'ପଇସା ତା'ଠୁ ପାଇଛି । ସେ ଗଲେ ଆର ସେତକ ତ ବନ୍ଦ ହେବ !"

ବଳି ବାବୁ—(କଥାକୁ ଛଡ଼ାଇ) "ନା, ବନ୍ଦ ହେବନାହିଁ । ହଇ ହେ ଆର୍ତ୍ତ ସାହୁ ! ତମକୁ ଏ ଗାଁ ଛାଡ଼ି ଯିବାକୁ ଆମେ ଦେବୁନାହିଁ । ଯାହା ପଡ଼ୁ ପଛେ ଆମେ ତୁମକୁ ଘଣା ପକାଇବାକୁ ବାଧ୍ୟ କରିବୁ । ତମେ ତମ ପୁଅକୁ ଡକାଅ । ସେ ନ ହେଲେ ଏକୁଟିଆ ତମେ ପାରିବନି । ଆମ ଗାଁର ମଧୁ ରଥେ କବିରାଜେ କେତେ ଚେର ମୂଳ ଜାଣନ୍ତି, ଯୋଡ଼େ ପାନରେ ତମ ଧୂଅର ପେଟ ବେମାରି ଭଲ ହେବ । ନ ହେଲେ ହେଇଟି, ଗୋଟେ ପାଣି ଟାଙ୍କି ବାହାରିଛି । ଖାଲି ପାଣିରେ ସବୁ ରୋଗ ସଫା । ସବୁଥିକି ସେଇ ଏକା ପାଣି । କହୁଛନ୍ତି କୁଆଡ଼େ, ନିଜେ ନିଜର ଟାଙ୍କି କରିପାରିବ, ଆଉ କୁଆଡ଼େ ଯିବାକୁ ପଡ଼ିବନି । ତେବେ ଆମେ ଦେଖିବାନି, ଏଥକୁ ଚିନ୍ତା କରନି । ଘରେ ଗାଈ ରହିଲେ ଦୁଧ ପାଇବ । ହଁ, ଆମକୁ ଯିମିତି ଦୁଧ ଲଗୁଆ ଦଉଥିଲ, ସେମିତି ଦେବ ଟି ?"

ଆର୍ତ୍ତ ସାହୁ—"ବଳି ବାବୁ, କମିତି କରିବ ? ବଳଦ ଆରବା ଭାଙ୍ଗିଦେଇଛି । ଅଭାବରେ ତ ସବୁ ବିକି ଦେଇଚି । ଘର ତ ଛପର ବିନା ଭାଙ୍ଗିଗଲି ଯେ ଆଉ ତୋଳିବାକୁ ବଳ ନାହିଁ । ମୋର ତ ସାହସ ପାଉନି ।"

ବଳିବାବୁ—"କ'ଣ ବାପା ଶୁଣିଲଟି ? ଗୋପୀ ଭାଇନା, ମହାରଣେ, ନାହାକେ, ଆହେ ସମସ୍ତେ ଶୁଣିଲଟି ? ଆର୍ତ୍ତ ସାହୁଙ୍କୁ ଆମେ ସମସ୍ତେ ସାହାଯ୍ୟ ନ କଲେ ସେ ଘଣା ବସାଇ ପାରିବେ ନାଇଁ । କଳ ଯେତେତେଲ ପେଡ଼ିବାର ପେଡ଼ୁ, ଆମେ ତ ଘଣା ତେଲ ଛଡ଼ା ଅନ୍ୟ ତେଲ ଖାଇବୁନି—ଇ । ଆରେ, ଦୁଆର ମୁହଁରେ ଖାଣ୍ଟି ତେଲ ମିଳୁଛି, ନ ଖାଇ, ଟିକଏ ଶସ୍ତାବୋଲି ଅନିଶ୍ଚିତ କମ୍ପାମ୍ପ ତେଲ ଖାଇ ରୋଗକୁ ଡାକିବୁ ?"

ମଦନ ବାବୁ—"ଆରେ, ଶସ୍ତା କ'ଣ ମ ? ମହାଋଣେ, ମହାପାପେ, ନାହାକେ ଆଉ ଅପର୍ତ୍ତି ସାହୁ କ'ଣ କହିଲେ ଶୁଣି-ଲୁନି କି ? ଆଜି ମହଙ୍ଗା ଶସ୍ତା କଥା ଉଠଉଛୁ ?"

ବଳି ବାବୁ—"ହଁ ବାପା, ସବୁ ବୁଝିଗଲି । ସମସ୍ତେ ଶୁଣ, ଆଜଠାରୁ ଗାଁରେ ପ୍ରଚାର କର, କଳ ତେଲ ବର୍ଜନ କରିବା; ଆଉ ଗାଁରେ ପୁଣି ଘଣା ବସାଇବା । ଚାନ୍ଦା ଉଠାଇ ଆର୍ତ୍ତି ସାହୁଙ୍କୁ ଥଇଥାନ କରିବା ।"

ଅନ୍ୟମାନେ ସମସ୍ତେ—"ହଁ ହେ, ଆମର ଜୀବନ ବଡ଼ ନା ଟଙ୍କା ବଡ଼ ? ଦେହ ଖରାପ ହେଲେ ତ ଏକା ଥଇକେ ଡାକ୍ତର ଆଉ ଔଷଧ ଆମକୁ କାଙ୍ଗାଳ କରି ପକାଉଛି । ଆମେ ସମସ୍ତେ ଘଣା ତେଲ ଖାଇବୁ ଏଣିକି ।"

ବଳି ବାବୁ—"ଏବେ ଧ୍ୱନି କର—କମ୍ପାନୀ ତେଲ ଯାଉ, ଘଣା ଏ ଗାଁରେ ହେଉ ।"

ସମସ୍ତେ ଏକାବେଳକେ କହି ଉଠିଲେ— "କମ୍ପାନୀ ତେଲ ଯାଉ, ଘଣା ଏ ଗାଁରେ ହେଉ ।"

———

# ଭାବିବାର କଥା

ନବଘନପୁରରେ ନିଆଁ ଲାଗିଛି , ବୋବାଳି ପଡ଼ୁଛି "ଆରେ, ପାଣି ଆଣ ରେ, ସବୁ ତ ଗଲାଲେ, ମୁଁ କ'ଣ କରିବ ? ହାୟରେ—ଆଉ ରକ୍ଷା କି ଲଭ ? ଯାଉଛି, ଏଇକ୍ଷଣି ନିଆଁକୁ ଡେଇଁ-ପଡ଼ିବି — ଇଃ ; ହେ ଗୋବିନ୍ଦା, ଗୁଲଟା ଓଲଟ ଦେ ମ — ଅଃ ; ଆଲେ, ମୋର ତ ସେ ପେଣ୍ଠରାରେ ଟଙ୍କା ଥିଲା ଲେ, କେହି ତ ଆଣିଲେନି-ଇଃ ! ଗଲା, କୋଠିକି ତ ଧଇଲାଣି , ସବୁ ଧାନ-ତକ ତ ଗୁଠି ଦେବ ଲେ ! ହେ ବିଧାତା ! ହାୟରେ—ଏ ପ୍ରାଣ ରଖି କି ଲଭ ? ହେ ମା କାଳି ! ହେ ମା ଭଗବତି ! ହେ ମା ଝାଡ଼େ-ଶ୍ୱରି ! ସୁଦୟା କର ମା !"

ଗାଁଟା ଏମୁଣ୍ଡରୁ ସେ ମୁଣ୍ଡ ସବୁ ହୁ'ହୁ ହୋଇ ଜଳୁଛି । ପିଲା କବିଲା ବୁଢ଼ୀ ସବୁ ଏପରି ବୋବାଳି ଛାଡ଼ୁଛନ୍ତି । କିଏ କହୁଛି, "ଏତିକି ବେଳକୁ ମୋର ସୁଧଘ ନାହିଁ", କିଏ କହୁଛି, "ଆରେ ଗୋବିନ୍ଦା, ତୁ କାହିଁକି ଚଟକଲକୁ ଗଲୁ ରେ -ଏଃ ?" ଆଉ କିଏ କହୁଛି, "ମୋ ମାଧିଆ ଥିଲେ ଏକୁଟିଆ ତ ନିଆଁକୁ ରୋକି ଦେଇ-ଥାନ୍ତା ଲେ—ଓଃ !"

ଖାଲି "ପାଣି ଢାଳ, ପାଣି ଢାଳ," "ହେ, ମୋ ଘର ରେପା କରନ୍ତ" ଇମିତି ପାଟିଗୋଳ ହେଉଛି । କିଏ ତା ପିଲା କବିଲାକୁ ଧରି ନିରାପଦ ସ୍ଥାନକୁ ପଳାଉଛି । ମାତ୍ର ନିଆଁ ଲିଭାଇ-ବାକୁ ଗାଁରେ ଭେଣ୍ଡିଆ ନାହାନ୍ତି । କିଏ ଯାଇଛି କୁଲିକାମରେ ବହୁ ଦୂରକୁ, କିଏ କଲିକତାକୁ, କିଏ ବାହାରେ କେଉଁ

କାରଖାନାକୁ, କିଏ ସରକାରୀ ଗୃହକାର୍ଯ୍ୟରେ, ଆଉ କିଏ କେଉଁଠି, ଏହିପରି ପ୍ରାୟ ଅଧିକାଂଶ ଭେଣ୍ଡିଆ ଗାଁ ବାହାରେ । ଫଳରେ ଯେ ବା ମୁଷ୍ଟିମେୟ ଭେଣ୍ଡିଆ ଗାଁରେ ଅଛନ୍ତି, ସେମାନଙ୍କର ଯୁ' କେତେ ଯେ, ଏ ପ୍ରକାଣ୍ଡ ନିଆଁକୁ ଆୟତ୍ତ କରିବେ !

ହୁହୁ ହୁହୁଁ ଗାଁଟା ଯାକ ଜଳିଗଲା । ସାତପୁରୁଷି ଘର ଓ ଘରକରଣା ସବୁ ଜଳିଯାଇଛି । କାହାର ବା ଅଳ୍ପ କିଛି ରହି-ଯାଇଛି । ଗାଁଟାଯାକ ତଟସ୍ଥ, ଭୟଭୀତ ଏବଂ ମୂର୍ଚ୍ଛାଗ୍ରସ୍ତ ।

ହିଁ, ଦମକଳକୁ ଖବର ଯାଇଥିଲା, ଦମକଳ ଆସିଛି । ମାତ୍ର ସେତେବେଳକୁ ସବୁ ସଫା । ତଥାପି ଦମକଳବାଲା, ତାଙ୍କର ତ କର୍ତ୍ତବ୍ୟ କରିବେ । ସେମାନେ ଗାଁ ପୋଖରୀର ପାଣିକୁ ଶୁଖାଇ ପାଣି ପକାଇବାରେ ହେଳା କରିନାହାନ୍ତି । ସେମାନଙ୍କ ଦୋଷ ବା କ'ଣ ? ଏତେ ବାଟ ! ପାଖରେ ଟେଲିଫୋନ୍ ନାହିଁ ! ସେଥିରେ ପୁଣି ଆଉ ଅନ୍ୟ ଆଡ଼େ ତ ଦୃଷ୍ଟି ଦେବାର ଅଛି !

ସମସ୍ତେ କୁହାକୁହି ହେଲେ, "ଏଡ଼େ ବଡ଼ ଗାଁଟା ଜଳିଗଲା ! ହେଲେ ଗାଁର ପିଲା କବିଲା, ବୁଢ଼ା ବଢ଼ୀମାନେ ତାକୁ ରୋକନ୍ତେ କିପରି ? ଗାଁରେ ଜୋରଦାରିଆ ଲୋକ ନ ଥିଲେ ଗାଁର ଅବସ୍ଥା ଏପରି ହୁଏ । ଏଡ଼େ ବଡ଼ ଗାଁଟେ ! ଭେଣ୍ଡିଆ ପୁଞ୍ଜେ ବାହାରିଥିଲେ ନିଆଁଟାକୁ ରୋକିଦେଇଥାନ୍ତେ । ଏବେ ଏତେ ରୋଜଗାର ମୁହୂର୍ତ୍ତ-କରେ ଗଲା !"

ଗାଁ ପୋଡ଼ି ଏବେ ୨।୩ ମାସ ହୋଇଗଲାଣି । ସରକାର 'ତୋକେ ପି, ଦଣ୍ଡେ ଖା' ନ୍ୟାୟରେ ଯାହା ବା ସାହାଯ୍ୟ ଦେଇ-ଥିଲେ, ସେତକ ପେଟକୁ ନଅଣ୍ଟେ । ଆଗ ତ ବଞ୍ଚିଲେ ଯାହା କରିବେ । ଖବର ପାଇ ବାହାରେ ଯେ ଯୁଠି କାମ କରୁଥିଲେ ସମସ୍ତେ ଆସି ପାରୁପର୍ଯ୍ୟନ୍ତ ଲାଗି ଖଣ୍ଡିଏ ଖଣ୍ଡିଏ ଡେରା ବାନ୍ଧି-

ଛନ୍ତି । ମାତ୍ର ପୂର୍ବର ଗାଁ । ଆଉ ସତେ କେବେ ଫେରିବ, ଏ ଆଶା ଏ ଜୀବନକୁ କାହାର ନାହିଁ ।

ସେ ଗାଁର ମଳ ସାହୁ ବୁଢ଼ାକୁ ୮୦ ବର୍ଷ ହେଲାଣି । ତା ବୟସର ସମସ୍ତେ ଟଳି ପଡ଼ିଲେଣି । ତା ଜୀବନକାଳରେ ଏତେ ବଡ଼ ବିପତ୍ତି ସେ ଗାଁକୁ କେବେ ହୋଇ ନ ଥିଲା । ମଳ ସାହୁ କହେ, ତା ପିଲାଦିନେ ନବଘନପୁର ଗର୍ଜି ଉଠୁଥିଲା । ଗାଁଟାରେ ଘର ସବୁ ନିଘଞ୍ଚ ଥିଲା । ଏବେ ଯିନା କିଏ କୁଆଡ଼େ ଉଠିଯିବା ଫଳରେ ଗାଁରେ ଅନେକ ଡିହ ଖାଲିପଡ଼ିଲାଣି । ଆଜକୁ ଛବର୍ଷ ତଳେ ଯେତେବେଳେ ସେ ଗାଁର ଭେଣ୍ଡି ଆମାନେ ଗାଁ ଛାଡ଼ି ଅନ୍ୟତ୍ର ଚାକିରି, ମୂଲ ଓ ମଜୁରିପାଇଁ ଯିବାକୁ ବସିଲେ, ସେତେବେଳେ ମଳ ସାହୁ ଗାଁ ଲୋକାଙ୍କୁ ଚେତାବନୀ ଶୁଣାଇ କହୁଥିଲା, "ଆରେ ପିଲେ, ସବୁ ଯାଉଛ ଯେ, ଘରେ ଯେ ପିଲା କବିଲା, ବୁଢ଼ୀ ସବୁ ରହିଲେ, ସେମାନେ କ'ଣ ବିପଦ ଆପଦକୁ ଠାଣ ହେବେ ଟି ?" ସତକୁ ସତ ଇତିମଧ୍ୟରେ କେତେବାର ଚୋରି ହୋଇଗଲାଣି । ମାତ୍ର ରୋକିବ କିଏ ? ପୁଲିସ୍ ଆସିଛନ୍ତି, ତାଙ୍କର ଯାହା କର୍ତ୍ତବ୍ୟ ତା କରିଛନ୍ତି ସତ, ତଥାପି ଚୋର ଧରାପଡ଼ିନାହିଁ । ଗାଁଟା ଭେଣ୍ଡି ଆ-ଶୂନ୍ୟ ହେଲେ ଏପରି ଦୁର୍ଦ୍ଦଶା ଭୋଗେ । ଶେଷକୁ କାଳପରି ନିଆଁ ଆସିଲା ଯେ, ସବୁ ଶେଷ କରି ଦେଲା ।

ମଳ ସାହୁର ଜୀବନକାଳରେ ଅନେକବାର ଗାଁରେ ନିଆଁ ଲାଗିଛି । ଗାଁରେ କେତେ ବାଣ ହୁଏ । ବାଣନିଆଁ ବହୁବାର ଘରଚାଳମାନଙ୍କରେ ପଡ଼ିଛି, ମାତ୍ର ସଙ୍ଗେ ସଙ୍ଗେ ସେ ସବୁ ଆୟତ୍ତ ହୋଇଯାଏ । କେଉଁଠି ନିଆଁ ଲାଗିଛି ବୋଲି ହୁରି ହେବା ମାତ୍ରକେ ରାତି ଦି' ପହର ହେଉ, ବା ଯେତେବେଳେ ହେଉ, ଶହେ ସରିକି ଜୋରଦାରିଆ ଲୋକ ବାହାରି ପଡ଼ୁଥିଲେ । ଗୋଟାଏ କଳ୍ପି ବଡ଼

କାମ ବା ବିପଦବେଳକୁ ସାହସ ଏ ଗାଁର କେତେ ଥିଲ ! ସେ ଗାଁରେ ଯୁ' ଦୁଇ ମାଇଲର ରାସ୍ତା ଅଛି, ସ୍କୁଲ ଆଉ ଲାଇବ୍ରେରୀ ଅଛି ସେସବୁ ସେ ଗାଁ ଭେଣ୍ଡିଆଙ୍କ କୃତିତ୍ୱ । ଏବେ ସେସବୁ ଖିନ୍‌ଖରାପ ହେବାକୁ ବସିଲାଣି ଯେ, ସେ ଆଡ଼କୁ ମନ କାହାର ନାହିଁ । ସମସ୍ତେ ଉପରକୁ ଆଁ କରି ଚାହିଁଛନ୍ତି । କଏ ଦେବ, କାମ ହେବ !

ବୁଢ଼ା ବଣ୍ଡ ଘୋଷର ସହିତ କହେ, "ମୋର ପିଲାଦିନ କଥା ମନେ ଅଛି, ଆଉ ମିଶ୍ରେ ବୁଢ଼ା ଥାନ୍ତି ଯେ, ଗାଁରେ କଳି-ତକରାଳ ମାମଲାମକଦ୍ଦମା ଯାହା ଉଠେ ପଦପଦକେ ଚାପୁ, ସମସ୍ତେ ଭୁଲ୍ ଯାନ୍ । ଏବ କଥା ଦେଖି ସବୁ ହଉଛି । ସେ ମଦନା ପୁଅ ସାଧୁଆ, ନାଁ ବାଳକ ଯାଇନ, ସେ ହେବ ପୁଣି ଏ ଗାଁର ମୁରବି ଆଉ ସରପଞ୍ଚ ! ଝାଉଁଠରିଆ ଟୋକାଟେ, ସେ ପୁଣି ଗାଁର ବୁଝାମଣା କରିବ ! ଏ କାଳ ତ ଯୁ। କଲି ! ହାଃ-ରେ, 'ବଡ଼ ବଡ଼ ଗଲେ ଫସର ଫାଟି, ସାନ ଆସିଛନ୍ତି ବେସର ବାଟି ।' ସେଥିକୁ ପୁଣି ଆମ ଗାଁ ଗ୍ରାମସେବକ ଆଉ ସେବକାଙ୍କର ଲୀଳା ଦେଖି ସବୁ ହଉଛି । ଏସବୁ ଦେଖିବାଠୁଁ ଏ ଜୀବନ ହେଲେ ଚାଲିଯାନ୍ତା ! ଏ ପିଲାଗୁଡ଼ାକ ଇନ୍ଦ୍ରଚନ୍ଦ୍ର ମାନୁନାହାନ୍ତି ! ଗାଁ ଦାଣ୍ଡରେ ଗୋଟାଏ ଗୋଟାଏ ପଠାଣଙ୍କ ପରି ଲୁଙ୍ଗିଟେ ଲଙ୍ଗଳାଙ୍କ ପରି ମାରି କିଏ ବା ଗୋଟେ ଲମ୍ବା ଗାଣ୍ଡିମୁଣାଟେ ଭରି, ବିଚ୍ ଦାଣ୍ଡରେ ମୁହଁରେ ସେଥିରୁ ଗୋଟେ ଗୋଟେ ସିଗ୍ରେଟ୍ ଲଗାଇ ଯୁ ଫୁଟାଣିରେ ଚାଲୁଛନ୍ତି !—ହାୟରେ କାଳ, କଣ ନ ହେଲା !"

ଏବେ ଟିକିଏ ଭାବନ୍ତୁ ତ, ଏ ନବଘନପୁରର ଦୁରବସ୍ଥା ଯେପରି ହେଲା, ସବୁ ଗାଁର ଅବସ୍ଥା ସେପରି ହେବାକୁ ଯାଉଛି । ଗାଁମାନଙ୍କରେ କେତେ ଧନ୍ଦା ଥିଲା । ଗାଁରେ ତନ୍ତୀ, ତେଲି, ଗୁଡ଼ିଆ, ବଢ଼େଇ, କମାର ଭଣାଳୀ, କଠାଲୀ, ଗୁଷୀ, ମୂଳିଆ,

ଶଗଡ଼ିଆ, କୁମ୍ଭାର, କେଉଟ, ବଣିଆ, ଶଙ୍ଖକାର, ଶିଳ୍ପୀ, କାରିଗର, ପାଟରା, ଧୋବା ଓ ବାରିକ ସ୍ୱଚ୍ଛନ୍ଦରେ ଥିଲେ ; ଯେ ଯେଉଁ ଧନ୍ଦା କରୁଥିଲେ, ଏଣେ ଖଣ୍ଡେ ଖଣ୍ଡେ ଜମି ଧରିଥିଲେ, ଆନନ୍ଦରେ ଚଳିଯାଉଥିଲେ । ଘରେ ଗାଈ ଥିଲା, ଦୁଧ ପାଉଥିଲେ । ଗାଁର ଧନ ଗାଁରେ ହିଁ ରହୁଥିଲା । ଲୁଗା କିଣିଲେ ଧନ ପାଇଲା ତନ୍ତୀ, ତେଲ କିଣିଲେ ତେଲି ପାଇଲା, ହାଣ୍ଡି କିଣିଲେ କୁମ୍ଭାର ପାଇଲା । ଠିକ୍ ଏହି ନ୍ୟାୟରେ ଯେ ଯାହା କିଣୁ ସେ ସବୁରେ ଗାଁକୁ ହିଁ ଧନ ଆସୁଥିଲା । ସମସ୍ତେ ଖାଇପିଇ ସୁଖରେ ଥିଲେ ଆଉ ବିପଦକୁ ସାହା ଥିଲେ ।

ସେତେବେଳେ ଯାହାର ଯେତେଟା ପୁଅ ତା'ର ସେତେ ବଳ ଥିଲା ! ଆଜିକାଲି ପିଲାଙ୍କ ହାତରେ ମଲି କଙ୍କଡ଼ା ଲେଉଟାଇ ହେଉନି ବୋଲି ପିଲାଗୁଡ଼େ ହେବାରୁ ସିନା ହଂସା ଉଡ଼ୁଛି । ମାତ୍ର ଆଗେ ପ୍ରତ୍ୟେକେ କାମକୁ ଆଗୁଆ ହେଉଥିବାରୁ ଯେତେ ସନ୍ତାନ ସେତେ ଖୁଣ୍ଟ ପରି ଘରକୁ ବଳ ହେଉଥିଲେ । ବର୍ତ୍ତମାନ ତ କଳଯୁଗରେ ବେକାରଙ୍କ ସଂଖ୍ୟା ହୁ ହୁ ବଢ଼ି ଚାଲିଛି । ଗାଁରୁ ଧନ୍ଦା ଲୋପ ହେବାକୁ ବସିଲାଣି । ତନ୍ତୀକୁଳ ଧ୍ୱଂସ ପାଇ ମାଗି ଖାଇଲେଣି । ତେଲି ପୁଅ ଆଉ ତେଲ ପେଡ଼ୁ ନାହିଁ । ଠିକ୍ ଏମିତି ଗାଁର ସବୁ ଧନ୍ଦା ଗାଁରୁ ଯାଇ ମୁଷ୍ଟିମେୟ ମିଲ୍-ମାଲିକଙ୍କ ହାତରେ ରହିଲାଣି । ଯେଉଁ ଧନ ଆଗେ ଗାଁକୁ ଆସୁଥିଲା ତାହା ସୁଅ ମୁହଁରେ ମିଲ୍ ମାଲିକ ଆଡ଼କୁ ଯାଉଛି । ଗାଁ ଆଜି ତେଣୁ ନିଃସ୍ୱ ଓ ସମ୍ବଳହୀନ । ତେଣୁ ସିନା ପିଲା ବେଶୀ ହେବାରୁ ବୋଝ ପରି ମନେହେଉଛି । ଗାଁରେ ଧନ୍ଦା ଅଭାବରୁ, ପେଟ ପୋଷିବା ଅସମ୍ଭବ ହେବାରୁ ଯେ ଯୁଆଡ଼େ ପାରିଲା ଚାଲିଲା ; କିଏ ଗଲା ଆସାମ ଚା' ବଗିଚାରେ ହାଡ଼ଭଙ୍ଗା କାମ କରିବାକୁ ; କିଏ କୁଲି

ହେବାପାଇଁ କଲିକତା ଓ ମାନ୍ଦ୍ରାଜ ଗଲେ ; କିଏ କେଉଁ ଚଟକଳ, ଲୁଗାକଳ, ଅଟାକଳ, ଧାନକଳ ବା ଆଉ କୌଣସିଠାରେ କାମ କରିବାକୁ ଗଲେ । ଆଉ ଯେ ଦୁ'ଅକ୍ଷର ପଢ଼ିଲେ, ସେମାନଙ୍କ ହାତରେ ତ ପରିଶ୍ରମ କରିବାର ଶକ୍ତି ରହିଲନି ; ସେମାନେ ବାବୁଗିରି ଯେଉଁ କାମରେ ହୋଇ ପାରିବ ସେପରି ହାଲୁକା ଚଉକିବସା କାମ କିମ୍ବା ପରିଦର୍ଶନକାରୀଙ୍କ ପରି ସହଜିଆ କାମକୁ ଶ୍ରେୟ ମନେକରି ଗାଁ ଛାଡ଼ିଲେ । ତେଣୁ ଆଜି ଗାଁ-ଗୁଡ଼ାକ ଖାଲି ଖାଲି ଲାଗୁଛି , ସତେ ଯେପରି ଖାଇ ଗୋଡ଼ଉଛି । ବିପଦ ଆପଦକୁ ସାହା ଭରସା କେହି ଥିବାପରି ଜଣାପଡ଼ୁନି । ତେଣୁ ସିନା ଏ ଘରପୋଡ଼ି ବିପଦ, ରାତି ରାତିକେ ଦଶପନ୍ଦର ଘରୁ ଚୋରି ସମ୍ଭବ ହେଉଛି ।

ଆଗେ ଗାଁର ଧନ ବାଣ୍ଟିକୁଣ୍ଟି ହୋଇ ଧନ୍ଦା ଅନୁସାରେ ଗାଁ ଲୋକଙ୍କ ଭିତରେ ରହି ଯାଉଥିଲା । ଗାଁ ଲୋକଙ୍କ ମୌଳିକ ଅଭାବ ବାସ, ଗ୍ରାସ ଓ ବସନ—ଏସବୁ ସେହି ଗାଁରୁ ମେଣ୍ଟିଯାଉଥିଲା । ତେଣୁ ତନ୍ତୀ, କୁମ୍ଭାର, କମାର, ବଢ଼େଇ, ତେଲି, କେଉଟ, ଗଉଡ଼, ଗୁଡ଼ିଆ ଓ କାରିଗର ଆଦି ଲୋକମାନେ ବିଭିନ୍ନ ପ୍ରକାରରେ ଗାଁବାଲାଙ୍କର ଅଭାବ ମେଣ୍ଟାଇ ଗାଁର ସମ୍ବଳ ବାଣ୍ଟି ନେଉଥିଲେ । ସମସ୍ତେ ମୁଠେ ପେଟପୂରା ଖାଇବାକୁ ପାଉଥିଲେ ଏବଂ ଯାହା ବା ପାଉଥିଲେ ଖାଣ୍ଟି ଜିନିଷ ପାଉଥିଲେ । ମାତ୍ର ଏବେ ଲୋକଙ୍କର ଅଭାବ ଅନ୍ୟପ୍ରକାର ବଢ଼ିଛି । ଏଣେ କୁହାଯାଉଛି, ଲୋକଗୁଡ଼ାକ ସାଲୁବାଲୁ ହୋଇ ବଢ଼ିଗଲାରୁ ଆମର ଏ ଦୁର୍ଦ୍ଦଶା ଆସିଛି । କିନ୍ତୁ ଟିକିଏ ତଳେଇ କରି ଦେଖିଲେ ଏ ଯୁକ୍ତିରେ ମନ ବୁଝିବ ନାହିଁ । ଲୋକ ବଢ଼ିଲେ ସିନା ଅଭାବ ସଙ୍କୋଚନ କରିଦେବାର କଥା । ଜୀବନର ମାନଦଣ୍ଡ ବୃଦ୍ଧି କରିବା

ଲକ୍ଷ୍ୟରେ ବାହାର ଆଡ଼ମ୍ବର ଚଳଣି ବଢ଼ାଇବା ପାଇଁ ପାଉଡ଼ର, ସ୍ନୋ, ଅତର ଇତ୍ୟାଦି ପ୍ରସାଧନ ସାମଗ୍ରୀ ଓ ନାନାବିଧ ବିଳାସ ସାମଗ୍ରୀ ଆଦି ଅଯଥା ଅଭାବର ଯେ ସୃଷ୍ଟି ହୁଏଛି, ସେଥିରୁ 'ଲୋକ ଯେ ବଢ଼ିଯାଉଛନ୍ତି, କପରି ଏମାନଙ୍କୁ ଆଗେ ମୁଠେ ଖାଇବାକୁ ଦେବା, ପରେ ଅନ୍ୟ ଚିନ୍ତା'—ଏ ଭାବ କାହା ମନକୁ ଆସିବାପରି ତ ମନେ ହେଉନାହିଁ । ଯେଉଁ ଲୋକମାନେ ସ୍ନୋ ପାଉଡ଼ର କରୁଛନ୍ତି, ସେମାନେ କିଛି ନ ହେଲେ, ଯଦି ଶାଗ କିଆରିଟେ ବା ଫଳମୂଳ ଗଛଟେ କରନ୍ତେ ଏବଂ ଯେଉଁ କାରଖାନାରେ ଏସବୁ ତିଆର ହେଉଛି, ସେଠି ଯଦି କିଛି ପେଟ ପୂରିବା ଭଳି ଶସ୍ୟ ଉତ୍ପାଦନ କରାଯାନ୍ତା, ତେବେ ଏ ସଂସାରରେ ଲୋକସଂଖ୍ୟା ଯେ ବଢ଼ିଯାଇଛି ଏ ଚିନ୍ତା ମନକୁ ଧରିବ ବୋଲି ଜଣାପଡ଼ନ୍ତା । ପରିବାରରେ ଯେତେବେଳେ ନନା ନାନୀ ଦୁହେଁ ଥିଲେ, ସେତେବେଳେ ମୋଟା ବଗଡ଼ା ଭାତ, ଘିଅ ଓ ଦୁଧରେ ଅଭାବ ମେଣ୍ଟିଯାଉଥିଲା । ମାତ୍ର ପରିବାରରେ ଯେତେବେଳେ ବର୍ତ୍ତମାନ ଦଶପ୍ରାଣୀ ଅଧିକ ହେଲେଣି, ସେତେବେଳେ ଯଦି କେବଳ ଜୀବନର ମାନଦଣ୍ଡ ବୃଦ୍ଧି କରିବାଲାଗି ସିନେମା ଦେଖା ବଢ଼ିଗଲେ ; ସ୍ନୋ, ପାଉଡ଼ର ଓ ତେଲ ଆଦି ପ୍ରସାଧନ ସାମଗ୍ରୀର ବ୍ୟବହାର ବଢ଼ିଗଲେ ; ଲଜ୍ଜା ନିବାରଣ କରିବା ଦୂରେ ଥାଉ, ଶରୀରର ସମସ୍ତ ଆକର୍ଷଣୀୟ ସ୍ଥାନକୁ ନାଇଲନ୍ ତିଆରି ଝିଲ୍‌ମିଲ୍ ଶାଢ଼ୀ, ପୋଷାକ ଓ ବ୍ଲାଉଜ୍‌ରେ ଦେଖେଇ ହେବା ନିମିତ୍ତ ଅଜସ୍ର ବ୍ୟୟ ଇତ୍ୟାଦି ବାଜେଖର୍ଚ୍ଚ ବଢ଼ିଗଲେ, ତେବେ ପରିବାରକୁ କୁଟୁମ୍ବ ବଢ଼ିଥିବା ଚିନ୍ତା କେତେ ପରିମାଣରେ ଘାରିଛି ତାହା ଅନୁମେୟ । ଏ ଦୁନିଆଁରେ ଦୁର୍ଦ୍ଦଶା କାହିଁକି ବଢ଼ିଛି, ଏହାର କାରଣ ବୋଲିକୁ ଜନସଂଖ୍ୟା-ବୃଦ୍ଧି ମନକୁ ଆସୁଛି ; ମାତ୍ର ଜୀବନର ମାନଦଣ୍ଡ କୌଣସିମତେ

ବଢ଼ାଇବାକୁ ହେବ, ଏବଂ ସୁସଭ୍ୟ ହେବାକୁ ହେଲେ ସବୁବେଳେ "ଆମର ଅଭାବ ରହିଛି" ବୋଲି ଭାବି କୃତ୍ରିମ ଅଭାବକୁ ପୂରଣ କରିବାକୁ ହିଁ ପଡ଼ିବ ଏବଂ ଆବଶ୍ୟକ ହେଲେ ସଂଘର୍ଷର ବି ସମ୍ମୁଖୀନ ହେବାକୁ ପଡ଼ିବ ; ଏ ବେଳକୁ ଆମର ଲୋକ ବଢ଼ି ଯାଇଛନ୍ତି, ଏ ପ୍ରଶ୍ନ ତ ମନକୁ ଆସୁନାହିଁ !

ଭଗବାନ ଦେଇଥିବା ଦୈହିକ ଶକ୍ତି ଯଦି ଲୋକ ଅକ୍ଷୁଣ୍ଣ ରଖିପାରନ୍ତି ଏବଂ ଆଳସ୍ୟ ପରିହାର କରି ସମସ୍ତ ଶକ୍ତିକୁ ଉଚିତ ଭାବରେ ଖଟାଇପାରନ୍ତି, ତେବେ ଲୋକବୃଦ୍ଧି ଓ ପରିବାରରେ ସନ୍ତାନ ବୃଦ୍ଧି ପରିବାରକୁ ଯେ ଅଧିକ ସମ୍ବଳ ଦିଅନ୍ତି ଏବଂ ସହାୟ ହୁଅନ୍ତି, ଏଥିରେ ସନ୍ଦେହ ନାହିଁ । ଏ ଚିନ୍ତା, ଏ ଭାରତୀୟଙ୍କୁ ଭଲ-ଭାବରେ ଜଣା ଥିଲା । ତେଣୁ "ତୋର ସନ୍ତାନ ନ ହେଉ ବା ଗୋଟିଏ କି ଯୋଡ଼ିଏ ହେଉ" ଏପରି ଆଶୀର୍ବାଦ ଏ ଦେଶରେ ମିଳୁ ନ ଥିଲା । ଘରକୁ ମଣିଷ ସୁନ୍ଦର ଏବଂ ଘରେ ଜଣକୁ ଦି ଜଣ ଥିଲେ ବିପଦ ଆପଦକୁ ସାହା ହୁଅନ୍ତି ।

ତେଣୁ ଏସବୁ ବିଷୟର ଏକମାତ୍ର ସମାଧାନ ପନ୍ଥା ହେଉଛି, ଗାଁରେ ଧନ୍ଦାର ସୃଷ୍ଟି । ଯେଉଁ ଧନ୍ଦାସବୁ ଗାଁରେ ଅଛି, ତାହା ଯେପରି ଧ୍ୱଂସ ନ ପାଏ ସେଥିପ୍ରତି ଲକ୍ଷ୍ୟ ରହିବା ଏବଂ ଗାଁରେ ଯେ ଯେତେ କାମ ଓ ଧନ୍ଦା କରି ଚଳି ପାରିବ, ତା'ର ଉପାୟ ଚିନ୍ତା କରିବା ଏକାନ୍ତ ଆବଶ୍ୟକ !

ଏ ଗଡ଼ାପଡ଼ା କୁଣ୍ଢେଇ, ପ୍ଲାଷ୍ଟିକ ଦ୍ରବ୍ୟ ବା କଳ କୁଣ୍ଢେଇ କିମ୍ବା ନାନାପ୍ରକାର ପ୍ରସାଧନ ବା ବିଳାସ ସାମଗ୍ରୀ କିଣିବାଦ୍ୱାରା, ଏବଂ ଗୁଣ୍ଡଦୁଧ, ବିସ୍କୁଟ୍ ଡବା, ଲଜେଞ୍ଜ, ଡାଲଡା ଓ ଅଗରମିଶା ତେଲ ଇତ୍ୟାଦି ପ୍ରସାଦ ପରି ଗ୍ରହଣ କରିବାଦ୍ୱାରା, ଗାଁର ଧାନ ଓ ଧନ ବାହାରକୁ ଯେପରି ଗୁଳିଯାଉଛି ସେ ବାଟ ବନ୍ଦ କରିବାକୁ ହେବ । ଯଦି ଆମର ଗାଁରେ ସମସ୍ତେ ବାଣ୍ଟି କୁଣ୍ଟି ସ୍ୱଚ୍ଛନ୍ଦ ଭାବରେ

ଆନନ୍ଦ ଓ ସନ୍ତୋଷସହକାରେ ଚଳିବେ, ତେବେ ସେ ଉପାୟ ଶ୍ରେୟ ! ବରଂ 'ପର ଖାଉ, ଘର ନ ଖାଉ,' ଏ ବଂଶବୁଡ଼ା ମନୋଭାବ ହଟେଇବାକୁ ପଡ଼ିବ । ଗାଁ ଧନ୍ଦାନିଃସୃତ ପ୍ରତ୍ୟେକ ଦ୍ରବ୍ୟକୁ ଉଚ୍ଚ ସ୍ଥାନ ଦେଲେ,ଗାଁ ସମୃଦ୍ଧି ହେବ । ଗାଁ ତେଲଘଣାର କେଁ କଁର ଶବ୍ଦ, କେଉଁଠଘରର ଚୁଡ଼ା ପାହାର ଶବ୍ଦ, ଗୁଡ଼ଆଘରେ ଜଳିଆ-ଭଜାର ଚଡ଼ଚଡ଼ ଭଡ଼ଭଡ଼ ଶବ୍ଦ, କୁଟୁଣୀ ଢେଙ୍କିର ଧାକୁଡ଼୍ ଧାକୁଡ଼୍ ଶବ୍ଦ, ଅଟାପେଷଣାର ଘର ଘର ଶବ୍ଦ, ଚନ୍ତର ଠକ୍ ଠକ୍ ଶବ୍ଦ ଏବଂ ଶଗଡ଼ଆର ହ-ଉ-ଉ ଶବ୍ଦ, ଯାହାକି ସମଗ୍ର ଗାଁକୁ ବ୍ରାହ୍ମମୁହୂର୍ତ୍ତରୁ ଗହଳ କରି ଗ୍ରାମବାସୀଙ୍କୁ ସତେ ଯେପରି ନିଦ୍ରାତ୍ୟାଗ କରିବାକୁ ମଧୁର ଭାବରେ ଡାକେ, ଯେଉଁ ଶବ୍ଦ ବାହାର ଦୁନିଆକୁ ସତେ ଯେପରି ଜଣାଇ ଦିଏ, 'ଗାଁ ବଞ୍ଚିଥିବ କାଳେ କାଳେ', ସେ ଶବ୍ଦଠାରୁ କେଉଁଗୁଣରେ ନିର୍ଜୀବ ମେସିନ୍‌ର ବିକଟାଳ କର୍କଶ ଶବ୍ଦ ଶ୍ରେୟ, ଜାଣି ହୁଏନି । ପୁଣି ଯେଉଁ ସ୍ୱାର୍ଥକୈନ୍ଦ୍ରିକ ମେସିନ୍ ବାୟୁ-ମଣ୍ଡଳକୁ ଦୂଷିତ ବାଷ୍ପରେ ଭରପୂର କରିପକାଇ ଲୋକଙ୍କର ସ୍ୱାସ୍ଥ୍ୟହାନିର ଏକ ପ୍ରଧାନ କାରଣ ହୁଏ, ତାହା କେଉଁ ଗୁଣରେ ଗାଁର ବିକେନ୍ଦ୍ରିତ ଧନ୍ଦାଠାରୁ ଶ୍ରେୟ, ବୁଝି ହୁଏନାହିଁ ।

ପୁଣି ସବୁ ଗାଁରେ ମହାତ୍ମାଗାନ୍ଧିଙ୍କ ପ୍ରଦର୍ଶିତ ପ୍ରାକୃତିକ ଚିକିତ୍ସାର ପ୍ରଚଳନ ସମ୍ଭବ ହୋଇପାରିବ । ପାଶ୍ଚାତ୍ୟ ଦେଶର କେତେକ ବଡ଼ ବଡ଼ ଆଲୋପାଥିକ୍ ଡାକ୍ତର ସେମାନଙ୍କର ଆଲୋପାଥି ବିଦ୍ୟାକୁ ଛାଡ଼ି ପ୍ରାକୃତିକ ଚିକିତ୍ସା ପ୍ରତି ଆକୃଷ୍ଟ ହୋଇଛନ୍ତି ଏବଂ ହେଉଛନ୍ତି ମଧ୍ୟ । ଏଥିରେ ଗୋଟିଏ ମାତ୍ର ରୋଗ । ତେଣୁ ଚିକିତ୍ସା ପଦ୍ଧତି ଏକ ପ୍ରକାର । ସମସ୍ତ ରୋଗର ପ୍ରତିଷେଧକ ପାଇଁ ବି ଏକ ବ୍ୟବସ୍ଥା ! ପ୍ରତ୍ୟେକ ବ୍ୟକ୍ତି ବି ଏହା କରି ପାରିବେ । ଏଥିରେ ସବୁ ରୋଗକୁ ଏକ ମାତ୍ର ଔଷଧି ହେଲା, ନିର୍ମଳଜଳ ।

ଗାଁର ପ୍ରତ୍ୟେକ ବ୍ୟକ୍ତି ଯଦି ଯଥାଶକ୍ତି ଶ୍ରମ କରନ୍ତେ, ତେବେ ଏକେ ତ ସୁସ୍ଥ ଓ ଦୀର୍ଘାୟୁ ହୁଅନ୍ତେ, ତା ଛଡ଼ା ଗାଁର

ଯାବତୀୟ ମୌଳିକ ଆବଶ୍ୟକତା ସେହି ଗାଁରୁ ହିଁ ମେଣ୍ଟିଯାନ୍ତା । ରାସ୍ତାକଡ଼ମାନଙ୍କରେ ଓ ସାଧାରଣ ସ୍ଥାନମାନଙ୍କରେ ଫଳ ଗଛ, ଗାଈ ଗୋରୁଙ୍କ ପାଇଁ ବଡ଼ ବଡ଼ ଘାସ, ହରଡ଼ ଗଛ, ସୋରିଷ, ମାଣ୍ଡିଆ, ଚିନାବାଦାମ୍ ଏବଂ ଯାହା ଯାହା ସମ୍ଭବ ହୁଅନ୍ତା ତାହା ଲଗାଯାନ୍ତା । ପୁଣି ଜାଳେଣିକାଠ ଗଛମାନ ଲଗାଯାନ୍ତା, ଯାହା ଫଳରେ ଗୋବର ଆଉ ଘସି ହୁଅନ୍ତା ନାହିଁ । ଗାଈର ଗୋବର, ମୂତ, ମଣିଷର ମଳମୂତ୍ର ଓ ଯାବତୀୟ କାଠିକୁଟା ସବୁ ଖତ ରୂପରେ ବ୍ୟବହାର କରିବାଦ୍ୱାରା କୃଷି ଉତ୍ପାଦନ ବହୁ ଗୁଣରେ ବଢ଼ିପାରନ୍ତା । ଯେଉଁମାନେ ନିଃସ୍ୱ, ସେମାନଙ୍କ ମାର୍ଫତରେ ସାଧାରଣ ସ୍ଥାନର ଗଛମାନ ଛାଡ଼ିଦେଲେ, ସେମାନେ ଆନନ୍ଦରେ ଚଳିଯାନ୍ତେ । ଗାଁମାନଙ୍କରେ ଗାଈ ଗୋରୁ ଜଗିବା ପାଇଁ କେତେକ ନିଯୁକ୍ତ ହେବା ଫଳରେ କେତେକ ବି ପୋଷି ହୋଇଯାନ୍ତେ । ଗାଁରେ କପା, ଗାଁରେ ସୂତା ଓ ଗାଁରେ ଲୁଗା, ଏପରି ଅନ୍ୟାନ୍ୟ ସମସ୍ତ ଧନ୍ଦା ଗାଁରେ ହେବା ଫଳରେ କାହାକୁ ଧନ୍ଦା ଖୋଜିବାକୁ ପଡ଼ନ୍ତା ନାହିଁ । ତାହା ହେଲେ ଗାଁ ହସି ଉଠନ୍ତା ।

ଏପ୍ରକାର ଦୃଷ୍ଟିଭଙ୍ଗି ଜାଗରୁକ ହେଲେ, ଗାଁର ସମ୍ପଦ ଗାଁକୁ ଫେରିଆସିବ । ଗାଁର ଧନ୍ଦା ଅକ୍ଷୁଣ୍ଣ ରହିବ । ଗାଁଟି ଲୋକଗହଳରେ ଫାଟି ପଡ଼ୁଥିବ । ଗାଁ ଛେଣ୍ଡିଆ-ଶୂନ୍ୟ ଆଉ ହେବ ନାହିଁ । ପୁଣି ଘରପୋଡ଼ି, ଚୋର ବା ଆଉ କେଉଁ ପ୍ରକାର ସମୂହ ବିପତ୍ତି ବେଳକୁ ସାହାଭରସା ପାଇଁ ଗାଁରେ ଲୋକ ବଳ ବି ଥିବ । ତେବେ ଯାଇଁ ନବଘନପୁର ପୁଣି ନୂଆ ତେଜ, ଗୌରବ ଓ ସମୃଦ୍ଧିରେ ଉଦ୍ଭାସିତ ହେବ ଏବଂ ଯେଉଁ ଗାଁ ଭାରତର ହିଁ ଜୀବନ, ସେହି ଗ୍ରାମ ସବୁ ସମୃଦ୍ଧ ହେବା ଫଳରେ ସମସ୍ତ ଭାରତ ସମୃଦ୍ଧ ହେବ ଏବଂ ସର୍ବତ୍ର ସୁଖଶାନ୍ତି ବିରାଜମାନ ହେବ ।

---

ମୁଦ୍ରାକର—ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ୍, କଟକ-୨

ଲେଖକଙ୍କ ଅନ୍ୟାନ୍ୟ ବହି

୧ । **ଧୂମପାନ କାହିଁକି ?** (ପ୍ରକାଶିତ)

୨ । **ସ୍ୱାସ୍ଥ୍ୟ ଓ ସାମର୍ଥ୍ୟ**—୩ ଖଣ୍ଡରେ—(ଯନ୍ତ୍ରସ୍ଥ)

୧ମ—ଶରୀରଚର୍ଯ୍ୟାର ସାଧାରଣ ନିୟମ,

୨ୟ—ଆସନ,

୩ୟ—ବ୍ୟାୟାମ

୩ । **ଭ୍ରମରେ ହିଁ ସମାଧାନ** (ଯନ୍ତ୍ରସ୍ଥ)

ପ୍ରାପ୍ତି ସ୍ଥାନ

**ପ୍ରାକୃତିକ ଚିକିତ୍ସା ସଦନ**

**( The Nature Cure Institute )**

ଶେଖ୍‌ବଜାର, କଟକ-୨

ଏବଂ ପୁରୀ ଓ କଟକର ବଡ଼ ବଡ଼ ବହି ଦୋକାନ